# ORIYA
## UPPER PRIMARY
# GEOGRAPHY READ.

## ଓଡ଼ିଆ ଉଚ୍ଚ ପ୍ରାଥମିକ ଭୂଗୋଳ-ପାଠ ।



MACMILLAN & CO., LIMITED
CALCUTTA, BOMBAY AND LONDON.



THREE ANNAS

ମୂଲ୍ୟ • ⁄ ଅଣା

# ORIYA
## UPPER PRIMARY
# GEOGRAPHY READ

## ଓଡ଼ିଆ ଉଚ୍ଚ ପ୍ରାଥମିକ ଭୂଗୋଳ-ପାଠ ।



MACMILLAN & CO., LIMITED
CALCUTTA, BOMBAY AND LONDON.



THREE ANNAS

ମୂଲ୍ୟ ୦ • ୵ ଅଣା

## ଡିରେକ୍ଟର ମହୋଦୟ କର୍ତ୍ତୃକ ଅନୁମୋଦିତ ଭାରତୀୟ ବିଦ୍ୟାଳୟ-ସମୂହର ପାଠୋପଯୋଗୀ ମ୍ୟାକ୍‌ମିଲାନ୍ କୋମ୍ପାନିର ପୁସ୍ତକାବଳୀ ।



ଓଡ଼ିଆ ବର୍ଣ୍ଣବୋଧ ... ... ... ... ... ଟ ॰ /

ଓଡ଼ିଆ ନିମ୍ନପ୍ରାଥମିକ ବିଜ୍ଞାନର ପାଠ ... ... ... ଟ ॰ ୵

ଓଡ଼ିଆ ନିମ୍ନପ୍ରାଥମିକ ଅଙ୍କ ପୁସ୍ତକ ... ... ... ... ଟ ॰ [illegible]

ଓଡ଼ିଆ ଉଚ୍ଚ ପ୍ରାଥମିକ ବିଜ୍ଞାନର ପାଠ ... ... ... ଟ ॰ ।

ଓଡ଼ିଆ ଉଚ୍ଚ ପ୍ରାଥମିକ ଐତିହାସିକ ପାଠ (ବଙ୍ଗଦେଶ) ... ... ଟ ॰ ୵

ଓଡ଼ିଆ ଉଚ୍ଚ ପ୍ରାଥମିକ ପରୀକ୍ଷାର ଉପଯୋଗୀ ଭୌଗୋଳିକ ପାଠ ... ଟ ॰ ୵

ଓଡ଼ିଆ ଉଚ୍ଚ ପ୍ରାଥମିକ ଏବଂ ମଧ୍ୟ ଛାତ୍ରବୃତ୍ତି ପରୀକ୍ଷାର ଉପଯୋଗୀ
ଅଙ୍କ ପୁସ୍ତକ ... ... ... ... ଟ ୶ ୳

ଓଡ଼ିଆ ଉଚ୍ଚ ପ୍ରାଥମିକ ସାହିତ୍ୟ ପାଠ ... ... ... ଟ ॰ ୵

ଓଡ଼ିଆ ଉଚ୍ଚ ପ୍ରାଥମିକ ଏବଂ ମଧ୍ୟଓଡ଼ିଆ ବ୍ୟାବହାରିକ ଜ୍ୟାମିତି ଓ
ପରିମିତି ... ... ... ... ଟ ॰ ।

ଓଡ଼ିଆ ମଧ୍ୟଓଡ଼ିଆ ବା ଛାତ୍ରବୃତ୍ତି ପରୀକ୍ଷାର ଉପଯୋଗୀ ବିଜ୍ଞାନର
ପାଠ ... ... ... ... ଟ ॰ ।୵

ଓଡ଼ିଆ ମଧ୍ୟଓଡ଼ିଆ ବା ଛାତ୍ରବୃତ୍ତି ପରୀକ୍ଷାର ଉପଯୋଗୀ ଐତିହାସିକ
ପାଠ ... ... ... ... ଟ ॰ ।

ଓଡ଼ିଆ ମଧ୍ୟଓଡ଼ିଆ ବା ଛାତ୍ରବୃତ୍ତି ସାହିତ୍ୟ ପାଠ ... ... ଟ ॰ ।୵

ଓଡ଼ିଆ ମଧ୍ୟଓଡ଼ିଆ ବା ଛାତ୍ରବୃତ୍ତି ପରୀକ୍ଷାର ଉପଯୋଗୀ ଭୌଗୋଳିକ
ପାଠ ... ... ... ... ଟ ॰ ।

ଉପରୋକ୍ତ ପୁସ୍ତକ ସବୁ ଓଡ଼ିଶା ମିଶନ ଯନ୍ତ୍ରାଳୟର ସୁପରିଣ୍ଟେଣ୍ଡେଣ୍ଟଙ୍କ ନିକଟରେ ପ୍ରାପ୍ତବ୍ୟ ।

# ORIYA
## UPPER PRIMARY
# GEOGRAPHY READER

## ଓଡ଼ିଆ ଉଚ୍ଚ ପ୍ରାଥମିକ ଭୂଗୋଳ-ପାଠ ।

ଷଷ୍ଠ ।

MACMILLAN & CO., LIMITED
CALCUTTA, BOMBAY AND LONDON.

PRINTED AT THE ORISSA MISSION PRESS, CUTTACK.




ବଙ୍ଗଲ୍ ଦେଶ ଓ ଏହାର ସଂଲଗ୍ନ ଦେଶ ସମୂହ

# ସୂଚୀପତ୍ର ।



## ଚିତ୍ର ସମୂହର ତାଲିକା ।

# ଉଚ୍ଚ ପ୍ରାଥମିକ ଭୂଗୋଳପାଠ ।



ଗଙ୍ଗାନଦୀର ସ୍ରୋତ ମାଟିକୁ କ୍ଷୁଦ୍ର୨ ଅଂଶରେ ଭାଙ୍ଗି ଓ ଜଳ ସହିତ ମିଶାଇ ଏକ ସ୍ଥାନରୁ ବହି ନେଇ ଅନ୍ୟ ସ୍ଥାନରେ ଜମା କରିବାଦ୍ୱାରା ବଙ୍ଗପ୍ରଦେଶର ଭୂମି ସୃଷ୍ଟ ହୋଇଅଛି ।

ସୂର୍ଯ୍ୟର ଉତ୍ତାପ ସମୁଦ୍ର ଜଳକୁ ବାଷ୍ପ କରି ଦେଇ ତାହାକୁ ମେଘରୂପେ ଆକାଶକୁ ଉଠାଇ ନିଏ । ମେଘରୂପରେ ଥିବା ଜଳୀୟ ବାଷ୍ପ ଶୀତଳତର ବାୟୁ ସ୍ପର୍ଶରେ ଘନୀଭୂତ ହେବାରୁ, ତାହା ତରଳ ହୋଇ ଯାଇ ବର୍ଷାରୂପରେ ଭୂତଳରେ ପଡ଼େ । ଭୂମି ଉପରେ ପଡ଼ିତ ବର୍ଷାଜଳ କ୍ରମେ୨ ତଳକୁ ଭେଦୁଥାଏ ; ଅବଶେଷରେ ପଙ୍କର ସ୍ତର ନିକଟରେ ପହୁଞ୍ଚିଲେ ଅଧିକ ତଳକୁ ଭେଦ ନ ପାଇ ଝରରୂପରେ ପୃଥିବୀରୁ ବାହାରେ । ଏହି ଝରମାନ ନଦୀମାନଙ୍କରେ ଏବଂ ନଦୀମାନ ସମୁଦ୍ରରେ ପଡ଼ିତ ହୁଅନ୍ତି । ହିମାଳୟ ପର୍ବତସ୍ଥିତ ଗଙ୍ଗୋତ୍ରୀନାମ୍ନୀ ବରଫନଦୀ ଗଙ୍ଗାର ଉତ୍ପତ୍ତିସ୍ଥଳ । ଏହାର ତଳ ଅଂଶର ବରଫ ତରଳି ଯାଇ ଏକ୨ କ୍ଷୁଦ୍ର ଜଳପ୍ରବାହ ଜାତ ହୋଇଅଛି, ଓ ଏହି କ୍ଷୁଦ୍ର ପ୍ରବାହମାନ କ୍ରମଶଃ ମିଳି ବୃହତ୍ ଆକାର ଧାରଣ କରି ଅବଶେଷରେ ଗଙ୍ଗା ନାମ ପାଇଅଛି । ନଦୀ-ପ୍ରବାହ ବର୍ଷାକାଳରେ ବହୁତ ଗୋଳିଆ-ପାଣିମିଶା ମାଟି ବହି ନେଇଯାଏ ; ସେ ମାଟିକୁ ପଟୁ କହନ୍ତି ।

ନଦୀର ଦୈର୍ଘ୍ୟ ଓ ସ୍ରୋତର ବେଗ ଅନୁସାରେ ତାହାର ପଟୁ ବହି ନେବା କ୍ଷମତା ଅଧିକ ବା ଊଣା ହୁଏ । ପଟୁ ବହିବାକୁ ଉପଯୁକ୍ତ ହେବା

ନିମନ୍ତେ ନଦୀଗର୍ଭ ଏକ ମାଇଲ ପଥରେ ହାରାହାରି ୬ ଇଞ୍ଚ କ୍ରମନିମ୍ନ ହେବା ଆବଶ୍ୟକ । ବଙ୍ଗଳାର ନଦୀମାନେ ସମୁଦ୍ର ନିକଟକୁ ଯାଇ



ବରଫ ନଦୀ ।

ତ୍ରିକୋଣାକାର ଭୂମି ନିର୍ମାଣ କରିବା ପର୍ଯ୍ୟନ୍ତ ଏହିପରି କ୍ରମନିମ୍ନ ହୋଇ-ଥିବାରୁ ସେମାନେ ସମସ୍ତେ ଉଣା ଅଧିକରେ ପଙ୍କ ବହି ନେଇଯାନ୍ତି । ପଡ଼ିଥିବା ଗଛ କିମ୍ବା ବୁଡ଼ି ଯାଇଥିବା ନୌକା ପ୍ରଭୃତି ଯୋଗୁଁ ଅଢ଼

ସାମାନ୍ୟ ବାଧା ପ୍ରାପ୍ତ ହେଲେ, ସ୍ରୋତର ବେଗ କମିଯାଏ ଏବଂ ପଟୁ ଜମା ହୁଏ । ଏହି କାରଣରୁ ନଦୀ ଗର୍ଭରେ ଚଡ଼ା ପଡେ ଏବଂ ନଈ-କୂଳୀୟ ପଟୁ-ଜମି ଜାତ ହୁଏ । ଦୁଇ ନଦୀର ସଂଯୋଗ ହେତୁରୁ ମଧ୍ୟ, ସ୍ରୋତର ବେଗ କମିଯାଇ ଚଡ଼ା ପଡେ । ଏହି ଚଡ଼ା ଦୁଇ ନଦୀକୁ ପରସ୍ପରଠାରୁ ବିଭିନ୍ନ ରଖେ, ଏବଂ ଏହା ବୃହତ୍ ଆକାର ଧାରଣ କରୁଥିବା ସଙ୍ଗେ ୨ ଦୁଇ ନଦୀର ସଂଯୋଗସ୍ଥଳ କ୍ରମେ ୨ ନିମ୍ନକୁ ଘୁଞ୍ଚୁଥାଏ । ଊନବିଂଶ ଶତାବ୍ଦୀର ପ୍ରାରମ୍ଭରେ ଷ୍ଟପର୍ଡ ଏବଂ ଋଭେଲଗଞ୍ଜ, ଗଙ୍ଗା ସହିତ ଘର୍ଘରା ନଦୀର ସଂଗମ-ସ୍ଥଳର ନିମ୍ନରେ ଗଙ୍ଗା ଉପରେ ଥିଲେ, ମାତ୍ର ବର୍ତ୍ତମାନ ଉଭୟ ସ୍ଥାନ ସେହି ସଂଯୋଗ ସ୍ଥଳର କେତେକ ମାଇଲ ଉପରେ ଘର୍ଘରା ନଦୀକୂଳରେ ଅଛନ୍ତି ।

ପଟୁ ଜମା କରି ନୂତନ ଭୂମି ସୃଷ୍ଟି କରିବା ଛଡ଼ା ପୁରାତନ ଭୂମିକୁ ଖଣ୍ଡ ୨ କରି ବିଭକ୍ତ କରିବା ନଦୀମାନଙ୍କର ଆଉ ଗୋଟିଏ କାର୍ଯ୍ୟ । କୂଳ ପାଖରେ ନଦୀର ସ୍ରୋତ ଅତି ପ୍ରଖର ହେଲେ, ତାହା ନଦୀଗର୍ଭକୁ ଗଭୀର କରି କୂଳକୁ ବକ୍ରଭାବରେ ଖାଇଯାଏ । ନଦୀ ଯେଉଁ କୂଳକୁ ଏପରି ଭାବରେ ଖାଇ ଯାଉଥାଏ, ସେହି କୂଳପାଖର ଜଳ ଅତି ଗଭୀର ଏବଂ ତାହାର ବିପରୀତ ପାଖର ଜଳ କ୍ରମେ ଅଳ୍ପ ଗଭୀର ହୁଏ । ବଙ୍ଗଳାର ନଦୀମାନେ ଏହିପରି ବକ୍ରଭାବରେ କୂଳକୁ ଖାଇ ଯାଉଥିବାରୁ ସେମାନଙ୍କର ଗମନ ମାର୍ଗ ଏତେ କୁଟିଳ ହୋଇଅଛି । କେବେ ୨ ବର୍ଷାକାଳରେ ଏକ ୨ ନଦୀ ନିଜର କୂଳସ୍ଥିତ ଏକ ବାଙ୍କରୁ ଅନ୍ୟ ବାଙ୍କ ପର୍ଯ୍ୟନ୍ତ ଖାଇଯାଇ ମଧ୍ୟବର୍ତ୍ତୀ ସ୍ଥାନକୁ ଏକ ୨ ଉଭୟଙ୍କର ଝିଲରେ ପରିଣତ କରନ୍ତି ।

ବଙ୍ଗପ୍ରଦେଶରେ ସାଧାରଣ ସମତଳରେ ଅତି ଅଳ୍ପ ପାର୍ଥକ୍ୟ ଥିବାରୁ, ତହିଁରେ ପ୍ରବାହିତ ନଦୀ ଆପଣାକୁ ବିଭିନ୍ନ ଶାଖାପ୍ରଶାଖାରେ ବିଭକ୍ତ କରି ନିଜେ ଏକ ଦିଗରେ ଓ ତାହାର ଶାଖାପ୍ରଶାଖାମାନ ଅନ୍ୟାନ୍ୟ ଦିଗରେ ପ୍ରବାହିତ ହୁଏ । ଯେଉଁଠାରୁ ଶାଖାନଦୀ ବହିର୍ଗତ ହୋଇଥାଏ, ପ୍ରଧାନ

ନଦୀର ସ୍ରୋତ ସେହି ସ୍ଥାନର ତଳକୁ ନିଜ ଗର୍ଭରେ ବାଧା ପାଇଲେ, ତାହା ସେହି ସ୍ଥାନର ଉପରଭାଗରେ ଥିବା ବାଙ୍କ ଦେଇ ବାହାର ଶାଖା-ନଦୀରେ ପ୍ରବିଷ୍ଟ ହୁଏ, ଏବଂ ଶାଖାନଦୀର ଗର୍ଭକୁ କ୍ରମଶଃ ପ୍ରସାରିତ ଓ ଗଭୀର କରି ପକାଏ । ଏହିପରି ଶାଖାନଦୀ କ୍ରମେ ୨ ପ୍ରଧାନ ନଦୀରୁ ଅଧିକ




ଉତ୍ସ ନିର୍ଗମନର ଚିତ୍ର ।

ଜଳ ଗ୍ରହଣ କରିବାରୁ କୌଣସି ବର୍ଷାକାଳରେ ପ୍ରଧାନ ନଦୀ ନିଜମାର୍ଗ ଛାଡ଼ି ଶାଖାନଦୀର ମାର୍ଗରେ ଗମନ କରେ । ଯେଉଁ ତୋର୍ଷା ନଦୀ କୂଳରେ କୁଚବିହାର ନଗର ଅବସ୍ଥିତ ତାହା ଏହିପରି ନିଜମାର୍ଗ ଛାଡ଼ି ଶାଖାନଦୀର ମାର୍ଗରେ ଗମନ କରୁଅଛି ।

ବୋଧ ହୁଏ ଗଙ୍ଗାନଦୀ ବର୍ତ୍ତମାନ ପରି ଦକ୍ଷିଣ ପୂର୍ବଗାମିନୀ ନ ହୋଇ ତାହାର ପଶ୍ଚିମତମ ଶାଖା ଭାଗୀରଥୀର ପଥରେ ପୂର୍ବକାଳରେ ପ୍ରବାହିତ ହେଉଥିଲା । ତମଲୁକ, ସାତଗାଁ ଓ ଗୌଡ଼ ବଙ୍ଗଳାର ଏହି ପ୍ରାଚୀନ ରାଜଧାନୀତ୍ରୟ ପୂର୍ବକାଳରେ ଗଙ୍ଗାର ପ୍ରଧାନ ପ୍ରବାହ ଉପରେ ଅବସ୍ଥାନ କରୁଥିଲେ; ସେମାନଙ୍କର ବର୍ତ୍ତମାନ ଅବସ୍ଥିତି ଦେଖିଲେ ଗଙ୍ଗାର ପଥ ପରିବର୍ତ୍ତନର ପ୍ରଚୁର ପ୍ରମାଣ ମିଳୁଅଛି । ଭାଗୀରଥୀର ମାର୍ଗ ପରିବର୍ତ୍ତନ ଯୋଗୁଁ ମୁର୍ଶିଦାବାଦ ଜିଲ୍ଲାସ୍ଥିତ ଇଷ୍ଟଇଣ୍ଡିଆ କମ୍ପାନୀଙ୍କର ପ୍ରଧାନ ବାଣିଜ୍ୟ ସ୍ଥଳୀ କାଶିମ ବଜାରର ଗୌରବ ନଷ୍ଟ ହୋଇଥିଲା ।

ତିସ୍ତାନଦୀ ଯେଉଁଠାରେ ବ୍ରହ୍ମପୁତ୍ରରେ ପଡ଼ଅଛି, ସେହି ସ୍ଥାନର ପ୍ରାୟ ବିପରୀତପାର୍ଶ୍ୱରୁ ବ୍ରହ୍ମପୁତ୍ର ମୈମନ ସିଂହ ଜିଲ୍ଲା ଦେଇ ମେଘ୍‌ନା ସହିତ ସଂଯୁକ୍ତ ହେବା ନିମନ୍ତେ ଦକ୍ଷିଣପୂର୍ବଗାମୀ ହୋଇଅଛି । ପ୍ରାୟ ଏକଶତ ବର୍ଷପୂର୍ବେ ଏହାହିଁ ବ୍ରହ୍ମପୁତ୍ରର ପ୍ରଧାନ ପ୍ରବାହ ଥିଲା, ମାତ୍ର ଏବେ ଏହା ତାହାର ପ୍ରଧାନ ମାର୍ଗ ନୁହେ । ଦକ୍ଷିଣାଭିମୁଖରେ ଯେଉଁ ମାର୍ଗ ଦେଇ ଏହା ବର୍ତ୍ତମାନ ଗୋଆଲନ୍ଦଠାରେ ଗଙ୍ଗା ସଙ୍ଗେ ମିଳି ଅଛି, ତାହାହିଁ ଏହାର ବର୍ତ୍ତମାନକାଳର ପ୍ରଧାନ ପ୍ରବାହ-ପଥ ।

ଏକ ମାଇଲରେ ୬ ଇଞ୍ଚରୁ ଊଣା ଗଡ଼ାଣିଆ ହେଲେ ବଙ୍ଗପ୍ରଦେଶର ନଦୀମାନେ ତ୍ରିକୋଣ ଭୂମି ସୃଷ୍ଟି କରିବାକୁ ଆରମ୍ଭ କରନ୍ତି, ଅର୍ଥାତ୍ ସେମାନଙ୍କର ପଙ୍କ ତ୍ରିଭୁଜାକାରରେ ଜମା ହୁଏ । ଏପ୍ରକାର ତ୍ରିଭୁଜର ଓସାରିଆ ପାଖ ସର୍ବଦା ସମୁଦ୍ର ଆଡ଼କୁ ରହେ । ତ୍ରିକୋଣାକାର ଭୂମି ସୃଷ୍ଟି କରିବାକୁ ଆରମ୍ଭ କଲେ, ନଦୀମାନେ ଉପନଦୀମାନଙ୍କର ଜଳ ଗ୍ରହଣ କରନ୍ତି ନାହିଁ, ମାତ୍ର କ୍ରମେ ନାନା ଶାଖାପ୍ରଶାଖାରେ ବିଭକ୍ତ ହୁଅନ୍ତି । ପଙ୍କ ଜମା ହେବା ହେତୁରୁ ଏହି ଶାଖାପ୍ରଶାଖାମାନଙ୍କର ଗର୍ଭ ପାର୍ଶ୍ୱବର୍ତ୍ତୀ ସମଭୂମି ଅପେକ୍ଷା ଅଧିକ ଉଚ୍ଚ ହୋଇଯାଏ । ସୁତରାଂ ସେମାନେ ପ୍ରଧାନ ନଦୀରେ ପ୍ରବାହିତ ଜଳକୁ ବହି ନେଇ ନ ପାରି ଚତୁଃପାର୍ଶ୍ୱର ଦେଶକୁ

ବଲକା ଜଲରେ ପୂର୍ଣ୍ଣ କରନ୍ତି । ଏହି ବଲକା ଜଲ ବା ବନ୍ୟାଜଲ ବିକୋଣ ଭୂଖଣ୍ଡର ଉର୍ବରତାର ପ୍ରଧାନ କାରଣ । ଏତଦ୍ୱାରା ନଦୀ ପାର୍ଶ୍ୱରେ



ବିକୋଣାକାର ଦ୍ୱୀପର ଚିତ୍ର ।

ପ୍ରଚୁର ପଟୁ ଜମା ହୁଏ, ସୁତରାଂ କୂଳ ଉଚ୍ଚ ହୋଇଯାଏ । ଏହିପରି ଦୁଇ ଶାଖା-ନଦୀତଟରୁ ମଧ୍ୟବର୍ତ୍ତୀ ନିମ୍ନ ସ୍ଥାନରେ ଗୋଟିଏ୨ ସ୍ଥାୟୀ ଝିଲ ଜାତ ହୁଏ । ବିକୋଣ ଭୂମିର ସମୁଦ୍ର-ନିକଟବର୍ତ୍ତୀ ଅଂଶରେ ସଚରାଚର ଏହିପରି ଝିଲ ଦେଖାଯାଏ । ନଦୀର ଉପର ଅଂଶରେ ଭୂମି ଉଚ୍ଚ ହେବା ସଙ୍ଗେ୨ ଶାଖା ନଦୀମାନେ ପଟୁ ଜମା କରି ପ୍ରଧାନ ନଦୀରୁ ବିଚ୍ଛିନ୍ନ ହୋଇ ପଡନ୍ତି । ମାଥାଭଙ୍ଗା ଓ ଜେଲଙ୍ଗୀ ନଦୀମାନ ଏହିପରି ଗଙ୍ଗା ନଦୀରୁ ବିଚ୍ଛିନ୍ନ ହୋଇ ପଡୁଅଛନ୍ତି ।

ଗଙ୍ଗାର ବିକୋଣ ଭୂମିର ମସ୍ତକ ମୁର୍ଶିଦାବାଦ ଜିଲ୍ଲାର ସୁତି ନଗରର ନିକଟସ୍ଥ । ଏହିସ୍ଥାନ ଗଙ୍ଗାର ଉତ୍ପତ୍ତି ସ୍ଥଳଠାରୁ ୧୨୩୧ ମାଇଲ ଏବଂ ଗଙ୍ଗାର ଦୀର୍ଘତମ ଶାଖା ସମୁଦ୍ର ସଙ୍ଗେ ମିଶିବା ସ୍ଥାନଠାରୁ ୩୨୬ ମାଇଲ

ଦୂରରେ ଅବସ୍ଥିତ । ଏହି ତ୍ରିକୋଣ ଭୂମିର ଯେଉଁ ଅଂଶ ସମୁଦ୍ରର ନିକଟତମ ତାହାକୁ ସୁନ୍ଦରବନ କହନ୍ତି ।

ସୁନ୍ଦରୀ ଗଛ ଏଠାରେ ପ୍ରଚୁର ପରିମାଣରେ ଜାତ ହେଉ ଥିବାରୁ ଏହାର ଏପରି ନାମ ହୋଇଅଛି । ଭାଗୀରଥୀ ସୁତି ନଗରଠାରେ ଗଙ୍ଗାରୁ ବାହାରି ମୁର୍ଶିଦାବାଦ ଜିଲ୍ଲା ମଧ୍ୟ ଦେଇ ନଦୀୟା ନଗରଠାରେ ଜେଲଙ୍ଗୀ ନାମ୍ନୀ ଆଉ ଗୋଟିଏ ଶାଖା ସହିତ ମିଳିତ ହୋଇଅଛି । ଭାଗୀରଥୀ ଓ ଜେଲଙ୍ଗୀ ସମ୍ମିଳିତ ହୋଇ ଶାନ୍ତିପୁରର କିଞ୍ଚିତ୍ ଉତ୍ତରରୁ ହୁଗୁଳି ନାମରେ ପ୍ରସିଦ୍ଧ । ଛୋଟନାଗପୁର ମଧ୍ୟରେ ପ୍ରବାହିତ ଦାମୋଦର ଓ ରୂପନାରାୟଣ କଲିକତା ଓ ସମୁଦ୍ରର ମଧ୍ୟବର୍ତ୍ତୀ ସ୍ଥାନରେ ହୁଗୁଳି ସଙ୍ଗେ ମିଶି ଅଛନ୍ତି, ଏହି କାରଣରୁ ହୁଗୁଳିର ସ୍ରୋତ ବାଧା ପାଇ "ଜେମସ୍ ଏବଂ ମେରି" ଚଡ଼ା ସୃଷ୍ଟି କରୁଅଛି । ହୁଗୁଳି ନଦୀ ସାଗର ଦ୍ୱୀପଠାରେ ସମୁଦ୍ରରେ ପଡ଼ୁଅଛି ।

ଗଙ୍ଗା ନଦୀର ଗୁରାଇ ନାମକ ଆଉ ଗୋଟିଏ ଶାଖା ମାଥାଭଙ୍ଗାର ୬୫ ମାଇଲ୍ ତଳେ କୁଷ୍ଟିଆଠାରୁ ବାହାରି ଖୁଲ୍‌ନା ଓ ବାଖରଗଞ୍ଜ ଜିଲ୍ଲା ଦ୍ୱୟର ମଧ୍ୟବର୍ତ୍ତୀ ସ୍ଥାନ ଦେଇ ମଧୁମତି ନାମରେ ସମୁଦ୍ରରେ ପଡ଼ୁଅଛି ।

ଗଙ୍ଗା ନଦୀର ପ୍ରଧାନ ପ୍ରବାହ ଗୁଆଲନ୍ଦଠାରେ ବ୍ରହ୍ମପୁତ୍ର ସଙ୍ଗେ ଓ ଦକ୍ଷିଣ ଆସାମରୁ ପ୍ରବାହିତ ମେଘନା ସଙ୍ଗେ ଢାକା ଜିଲ୍ଲାର ଅଗ୍ନି କୋଣରେ ମିଶି ଅଛି; ତଦନନ୍ତର ବାଖରଗଞ୍ଜ ଓ ନୂଆଖାଲି ଦୁଇ ଜିଲ୍ଲାର ମଧ୍ୟବର୍ତ୍ତୀ ସ୍ଥାନ ଦେଇ ଏକ ପ୍ରଶସ୍ତ ଶାଖାରୂପେ ସମୁଦ୍ରରେ ପଡ଼ୁଅଛି । ବଙ୍ଗ ପ୍ରଦେଶ ମଧ୍ୟରେ ପ୍ରବାହିତ ବ୍ରହ୍ମପୁତ୍ରର ଗତି ପଥ ଅଳ୍ପ ଅଟେ । କୈଳାସ ପର୍ବତର ବରଫ ନଦୀରୁ ଉତ୍ପନ୍ନ ମାନସରୋବର ହ୍ରଦରୁ ବ୍ରହ୍ମପୁତ୍ର ନିର୍ଗତ ହୋଇ ପୂର୍ବାଭିମୁଖରେ ତିବ୍ବତ ଦେଶ ମଧ୍ୟରେ ପ୍ରବାହିତ ହୋଇଅଛି । ଭାରତର ଉତ୍ତର-ପୂର୍ବ ସୀମାନ୍ତରେ ଅବସ୍ଥିତ ସାଙ୍ପୋ ଏବଂ ମିସ୍‌ମି ପର୍ବତ ମଧ୍ୟ ଦେଇ ଏହା ସାଦିୟାଠାରେ ଆସାମରେ ପ୍ରବେଶ କରୁଅଛି ।

ତଦନନ୍ତର ଆସାମ ଉପତ୍ୟକା ମଧ୍ୟରେ ଦକ୍ଷିଣ-ପୂର୍ବ-ବାହିନୀ ହୋଇ ଗାରୋ ପାହାଡଙ୍କୁ ବୁଲି ବକ୍ରଭାବ ଧାରଣ କରି ରଙ୍ଗପୁର ଜିଲ୍ଲାର ପଶ୍ଚିମରେ ବଙ୍ଗପ୍ରଦେଶରେ ପ୍ରବେଶ କରିଅଛି ।

ଏହାର ସମସ୍ତ ଉପନଦୀମାନ ଦକ୍ଷିଣପାର୍ଶ୍ୱ ବା ପଶ୍ଚିମସ୍ଥ କୋଣଆଡୁ ଏଥିରେ ପଡି ଅଛନ୍ତି । ରାଯ୍‌ଡକ୍, ସଙ୍କୋଷ ଏବଂ ଜଲଡକା ଉପନଦୀ-ମାନେ ଭୁଟାନରୁ ଏବଂ ତିସ୍ତା ଉପନଦୀ ସିକମ୍‌ରୁ ବାହାରି ରଙ୍ଗପୁର ଜିଲ୍ଲାରେ ଏଥିରେ ପତିତ ହୋଇ ଅଛନ୍ତି ।

ଅତରାଇ ନଦୀ ଜଲପାଇଗୁଡି ଜିଲ୍ଲାରୁ ବାହାରି ଦିନାଜପୁର ଦେଇ ରାଜସାହି ଜିଲ୍ଲାର ଚଲାନ ଝିଲରେ ପଡି ବରାଲ ନାମରେ ତହିଁରୁ ନିର୍ଗତ ହୋଇ ପାବନା ଜିଲ୍ଲାରେ ବ୍ରହ୍ମପୁତ୍ର ସଙ୍ଗେ ମିଳିଅଛି । କରତୋୟା ଜଲପାଇଗୁଡି ଜିଲ୍ଲାରୁ ବାହାରି ରଙ୍ଗପୁର, ବଗୁଡା ଏବଂ ପାବନା ଜିଲ୍ଲା ଦେଇ ବ୍ରହ୍ମପୁତ୍ରରେ ପଡିଅଛି ।

ବ୍ରହ୍ମପୁତ୍ର ନଦୀର ନିମ୍ନଭାଗରୁ ନିର୍ଗତ ଧବଲେଶ୍ୱରୀ ନାମ୍ନୀ ଏକ ଶାଖା ଢାକା ଜିଲ୍ଲା ମଧ୍ୟ ଦେଇ ମୁନ୍‌ସିଗଞ୍ଜଠାରେ ମେଘ୍‌ନାରେ ପଡିଅଛି ।

ସାହାବାଦ ଜିଲ୍ଲାସ୍ଥିତ ଚଉସା ନଗରଠାରେ ଗଙ୍ଗା ନଦୀ ସର୍ବ ପ୍ରଥମେ ବଙ୍ଗଳାକୁ ସ୍ପର୍ଶ କରିଅଛି । ତଦନନ୍ତର ସାରଣ ଜିଲ୍ଲାସ୍ଥିତ ଛପରା ତଳେ ଘର୍ଘରା ସଙ୍ଗେ ସଂଯୁକ୍ତ ହେବା ପର୍ଯ୍ୟନ୍ତ ଉତ୍ତର-ପୂର୍ବ ଦିଗକୁ ବହି, ତହିଁ-ଉତ୍ତାରେ ପୂର୍ବବାହିନୀ ହୋଇ ଦାନାପୁରର କିଞ୍ଚିତ ଉପରେ ଏହାର ଦକ୍ଷିଣ ଦିଗରୁ ପ୍ରବାହିତ ନଦୀମାନଙ୍କ ମଧ୍ୟରେ ସର୍ବପ୍ରଧାନ ଶୋନ ନଦୀର ଜଲ ଗ୍ରହଣ କରିଅଛି ।

ଗଣ୍ଡକୀ ନଦୀ ପାଟନାର ବିପରୀତ ପାର୍ଶ୍ୱରେ ଗଙ୍ଗାର ଉତ୍ତର କୂଳଆଡୁ ତାହା ସଙ୍ଗେ ମିଶିଅଛି । ଗଣ୍ଡକୀ ଚମ୍ପାରଣ ଜିଲ୍ଲାର ଉତ୍ତର-ପଶ୍ଚିମସ୍ଥିତ ତ୍ରିବେଣୀ ଘାଟଠାରେ ପ୍ରଥମେ ବ୍ରିଟିଶ୍ ରାଜ୍ୟରେ ପ୍ରବେଶ କରିଅଛି ।

ତଦନନ୍ତର ଗଙ୍ଗା ସଙ୍ଗେ ମିଳିତ ହେବା ପର୍ଯ୍ୟନ୍ତ ଦକ୍ଷିଣ-ପୂର୍ବ-ବାହିନୀ ହୋଇଅଛି ।

ରାଜମହଲର ଗିରିମାଳା ପର୍ଯ୍ୟନ୍ତ ଆସିବା ଯାଏ, ଗଙ୍ଗାର ମାର୍ଗ ପୂର୍ବାଭିମୁଖୀ, ତଦନନ୍ତର ଦକ୍ଷିଣ ପୂର୍ବାଭିମୁଖୀ ଅଟେ । ମାର୍ଗର ଏହି ଅଂଶରେ ଏହାର ପ୍ରଧାନ ଉପନଦୀ କୁଶୀ ନେପାଳ ରାଜ୍ୟରୁ ବାହାରି ଭାଗଲପୁର ତଳେ ଗଙ୍ଗା ସଙ୍ଗେ ମିଳିଅଛି ।

ମହାନନ୍ଦା ଦାର୍ଜିଲିଙ୍ଗ ପାହାଡ଼ରୁ ବାହାରି ତରାଇଆ ନିକଟରେ ପୂର୍ଣ୍ଣିଆ ଜିଲ୍ଲାରେ ପ୍ରବେଶ କରିଅଛି । ତଦନନ୍ତର ମାଲଦହ ଜିଲ୍ଲା ମଧ୍ୟ ଦେଇ ଗୋଦାଗାଡ଼ିଠାରେ ଗଙ୍ଗା ସଙ୍ଗେ ମିଳିତ ହୋଇଅଛି ।

ବଙ୍ଗଳାର ପର୍ବତମାଳା ତିନିଗୋଟି ପ୍ରଧାନ ଦିଗରେ ପ୍ରସାରିତ; (୧) ଉତ୍ତର ଦିଗରେ ହିମାଳୟ ପର୍ବତମାଳାର ଏକ ଅଂଶସ୍ୱରୂପ ବିସ୍ତାରିତ, (୨) ଛୋଟନାଗପୁର ଓ ଓଡ଼ିଶା ମଧ୍ୟରେ ଦକ୍ଷିଣ-ପଶ୍ଚିମ ଦିଗରେ ଅବସ୍ଥିତ, (୩) ଦକ୍ଷିଣ-ପୂର୍ବ ଦିଗରେ ପାର୍ବତୀୟ ତ୍ରିପୁରା ଏବଂ ପୂର୍ବ ଚଟ୍ଟଗ୍ରାମ ମଧ୍ୟ ଦେଇ ବିସ୍ତାରିତ । ମୁଙ୍ଗେର ଜିଲ୍ଲାର ରାଜମହଲ ଏବଂ ଖଡ୍ଗପୁର ପର୍ବତମାଳା, ଓ ଶୋଣନଦୀର ପଶ୍ଚିମସ୍ଥ ଦକ୍ଷିଣ ସାହାବାଦର କାଇମୁର ପର୍ବତମାଳା, ଏମାନେ ବଙ୍ଗ ପ୍ରଦେଶରେ ଅନ୍ୟାନ୍ୟ ପର୍ବତ ଶ୍ରେଣୀ ଅଟନ୍ତି । କାଇମୁର ପର୍ବତମାଳା ମଧ୍ୟ ଭାରତସ୍ଥିତ ବିନ୍ଧ୍ୟାଦ୍ରିର ଶାଖା ଅଟେ ।

ଅତିଶୟ ଉଚ୍ଚତା ଯୋଗୁଁ ଏବଂ ଅନେକ ଗୁଡ଼ିଏ ପ୍ରଧାନ ନଦୀର ଉତ୍ପତ୍ତି ସ୍ଥଳ ହୋଇ ଥିବାରୁ ହିମାଳୟ ପର୍ବତମାଳା ପ୍ରସିଦ୍ଧ ହୋଇଅଛି । ୨୯୦୦୨ ଫୁଟ ଉଚ୍ଚ ଏବରେଷ୍ଟ (ଗୌରୀଶଙ୍କର) ଏବଂ ୨୮୧୭୬ ଫୁଟ ଉଚ୍ଚ କାଞ୍ଚନଜଙ୍ଘା ହିମାଳୟର ସର୍ବପ୍ରଧାନ ଦୁଇଗୋଟି ଶୃଙ୍ଗ । ଆଗ୍ନେୟଗିରିର ଅଗ୍ନ୍ୟୁତ୍ପାତ ଯୋଗୁଁ ହିମାଳୟ ତାହାର ବର୍ତ୍ତମାନ ଉଚ୍ଚତା ପ୍ରାପ୍ତ ହୋଇ ଅଛି । ହିମାଳୟର ଉଚ୍ଚତାର ବିଭେଦ ଅନୁସାରେ ବିଭିନ୍ନ ଜାତୀୟ

ଉଦ୍ଭିଦ ଦୃଷ୍ଟିଗୋଚର ହୁଏ । ଏହାର ମୂଳ ପ୍ରଦେଶରେ କଦଳୀ, ବାଉଁଶ, ତାଳ ପ୍ରଭୃତି ଗ୍ରୀଷ୍ମ କଟିବନ୍ଧର ବୃକ୍ଷ, କିଛି ଉପରକୁ ଗଲେ, ଓକ୍‌ଜାତୀୟ ସମକଟିବନ୍ଧର ବୃକ୍ଷମାନ ଦେଖାଯାନ୍ତି । ତାହାର ଉପର ଭାଗରେ ଝାଉ, ଦେବଦାରୁ ପ୍ରଭୃତି ଶୀତ କଟିବନ୍ଧର ଉଦ୍ଭିଦ ମିଳନ୍ତି । ମେରୁ ପ୍ରଦେଶର ଶୈବାଳ ସର୍ବୋପରି ଭାଗରେ ଦେଖିବାକୁ ମିଳେ । ଦ୍ରୁତଗାମୀ ଗିରିନଦୀମାନଙ୍କ ଦ୍ୱାରା ହିମାଳୟ ମଧ୍ୟସ୍ଥିତ ଉପତ୍ୟକାମାନ ଖୋଦିତ ହୋଇଅଛି । ନଦୀ ସୃଷ୍ଟି କରିବାରେ ପର୍ବତମାନଙ୍କର କାର୍ଯ୍ୟ ପାର୍ଶ୍ୱସ୍ଥ ଚିତ୍ରରୁ ଦେଖାଯିବ । ଜଳ ସର୍ବଦା ନିମ୍ନଆଡ଼କୁ ଗତି କରେ ଏବଂ ପ୍ରତ୍ୟେକ ଗିରିଶ୍ରେଣୀ ମଧ୍ୟରେ ପ୍ରାୟ ଏକ ଏକ ନିର୍ଝରିଣୀ ପ୍ରବାହିତ ହୋଇ ନିମ୍ନଆଡ଼କୁ ଗତି କରୁଥିବାରୁ, କ୍ରମେ କେତେଗୁଡ଼ିଏ ମିଳିତ ହୋଇ ନଦୀରୂପରେ ପ୍ରବାହିତ ହୁଅନ୍ତି ।

ପର୍ବତମାନେ ଏକ ଶ୍ରେଣୀ ବା ମାଳାର ଆକାରରେ ଅଥବା ଗୋଟିଏ ଗୋଟିଏ ହୋଇ ଭିନ୍ନ ଭିନ୍ନ ଭାବରେ ଏକତ୍ର ଅବସ୍ଥାନ କରନ୍ତି । ପ୍ରଥମୋକ୍ତ ପର୍ବତମାନଙ୍କୁ ପର୍ବତଶ୍ରେଣୀ କୁହାଯାଏ, ଯଥା ହିମାଳୟ ପର୍ବତଶ୍ରେଣୀ ; ଶେଷୋକ୍ତ ପର୍ବତମାନଙ୍କୁ ଗିରିପୁଞ୍ଜ ବୋଲାଯାଏ ।

ଛୋଟନାଗପୁର ଓ ଓଡ଼ିଶାର ପର୍ବତମାନ ମଧ୍ୟ ଭାରତୀୟ ପର୍ବତମାଳାର ଉତ୍ତର ଏବଂ ପୂର୍ବଦିଗକୁ ବିସ୍ତୃତ । ଏମାନଙ୍କର ଉଚ୍ଚତମ ଶୃଙ୍ଗ ପରେଶନାଥ, ୪୪୮୦ ଫୁଟ ଉଚ୍ଚ । ଏହା ହଜାରିବାଗ ଜିଲ୍ଲାର ପୂର୍ବରେ ଅବସ୍ଥିତ, ଏବଂ ଜୈନ ମନ୍ଦିର ନିମିତ୍ତ ପ୍ରସିଦ୍ଧ ।

ପାର୍ବତୀୟ ତ୍ରିପୁରା ଏବଂ ଚଟ୍ଟଗ୍ରାମସ୍ଥିତ ବଙ୍ଗୋପସାଗରର ପୂର୍ବବର୍ତ୍ତୀ ଅନ୍ୟାନ୍ୟ ସଂକ୍ଷିପ୍ତ ପର୍ବତ-ଶ୍ରେଣୀମାନ ସମୁଦ୍ରକୂଳ ପ୍ରତି ଓ ପରସ୍ପର ପ୍ରତି ସମାନ୍ତର ଭାବରେ ଅବସ୍ଥିତ ।

ସମୁଦ୍ରର କ୍ଷୟ-କାର୍ଯ୍ୟର ଆଉ ଗୋଟିଏ ପ୍ରଧାନ କାରଣ । ସମୁଦ୍ରତୀରବର୍ତ୍ତୀ ଭୂମି ସମାନରୂପେ କଠିନ ନୋହିବାରୁ ଉପସାଗର ଓ




ନଦୀ, ପର୍ବତ, ସମତଳ ଓ ସହର ।

ଅନ୍ତରୀପମାନଙ୍କର ସୃଷ୍ଟି ହୋଇଅଛି । କୋମଳ ମୃତ୍ତିକା ଶୀଘ୍ର କ୍ଷୟପ୍ରାପ୍ତ ହେବାରୁ ଉପସାଗର ଜାତ ହୁଏ; କଠିନ ମୃତ୍ତିକା ସମୁଦ୍ରର କ୍ଷୟ-କାର୍ଯ୍ୟରେ ବାଧା ଦେବାରୁ ଅନ୍ତରୀପ ହୋଇ ରହେ ।

କୂଳରେ ଥିବା ଭୂମିର ପ୍ରକୃତି ଉପରେ କୂଳର ଆକୃତି କପରି ନିର୍ଭର କରେ, ତାହା ପାର୍ଶ୍ୱବର୍ତ୍ତୀ ଚିତ୍ରରୁ ଦେଖା ଯାଉଅଛି ।



ସମୁଦ୍ରର ଉପକୂଳ ।

ବଙ୍ଗଳାର ତୀରଭୂମି ନିମ୍ନ ଓ ଚେପ୍ଟା । ଓଡ଼ିଶାସ୍ଥିତ ଫଲ୍ସପଏଣ୍ଟ ବା

ବତ୍ତୀଘର ଏବଂ ପାନିର୍ ବ୍ୟତୀତ ସମୁଦ୍ର ମଧ୍ୟକୁ ବିସ୍ତୃତ ହୋଇଥିବା ଅନ୍ତ-ରୀପ ବଙ୍ଗଳାରେ ଆଦୌ ଦୃଷ୍ଟିଗୋଚର ହୁଏ ନାହିଁ । ତୀର ନିକଟରେ ପ୍ରବାହିତ ସାମୁଦ୍ରିକ ସ୍ରୋତ ନଦୀଦ୍ୱାରା ଆନୀତ ବାଲୁକାକୁ ସ୍ତୂପାକାରରେ ଜମା କରଦଏ । ଏପରଭାବରେ ସ୍ତୂପୀକୃତ ବାଲୁକା ଥିଲେହେଁ, ଝଡ ସମୟରେ ସମୁଦ୍ରର ଲହରୀଦ୍ୱାରା ବହୁ ଅନିଷ୍ଟ ସାଧିତ ହୁଏ । ମେଘ୍ନାର ମୁହାଣ ଏବଂ ଚଟ୍ଟଗାଁ ଇଲାକାର ସମୁଦ୍ରକୂଳ ଏହି ଉଭୟ ସ୍ଥାନରେ ବହୁ-କାଳରୁ ଏପ୍ରକାର ଅନିଷ୍ଟ ସାଧିତ ହୋଇ ଆସୁଅଛି । ବର୍ଷାକାଳରେ ବୃହତ୍ ନଦୀମାନେ ପ୍ରଚୁର ପରିମାଣରେ ଜଳ ଆନୟନ କରନ୍ତି ଏବଂ ତାହା ସଙ୍ଗେ ଆସୁଥିବା ପଙ୍କ ସମୁଦ୍ର ମଧ୍ୟରେ ବହୁତ ଦୂରକୁ ନୀତ ହୁଏ; ଅତଏବ, ନଦୀମାନଙ୍କଦ୍ୱାରା ଆନୀତ ପଙ୍କର ପରିମାଣ ଦେଖି ଭୂମି ସମୁଦ୍ର ଭିତରକୁ ଯେତେ ପରିମାଣରେ ମାଡି ଯିବାର ଆଶା କରାଯାଏ, ତେତେ ମାଡିବାର ଦେଖାଯାଏ ନାହିଁ । ଯାହାହେଉ, ମେଘ୍ନା ମୁହାଣ ଏବଂ ତନ୍ମଧ୍ୟସ୍ଥ ଦ୍ୱୀପମାନଙ୍କରେ ବହୁପରିମାଣରେ ପଙ୍କ ଜମା ହେବାର ଦେଖା ଯାଉଅଛି ।

ବଙ୍ଗଳାର ଜଳବାୟୁ ପ୍ରଧାନତଃ ଆର୍ଦ୍ର । ଏ ପ୍ରଦେଶରେ ତିନିଗୋଟି ଋତୁ ଦେଖାଯାଏ—ନବେମ୍ବରଠାରୁ ମାର୍ଚ୍ଚ ପର୍ଯ୍ୟନ୍ତ ଶୀତଋତୁ, ଏପ୍ରିଲ୍-ଠାରୁ ଜୁନ ମଧ୍ୟଭାଗ ପର୍ଯ୍ୟନ୍ତ ଗ୍ରୀଷ୍ମଋତୁ ଏବଂ ଜୁନ ମଧ୍ୟଭାଗଠାରୁ ଅକ୍ଟୋବର ଶେଷ ପର୍ଯ୍ୟନ୍ତ ବର୍ଷାଋତୁ ।

ଦକ୍ଷିଣ-ପଶ୍ଚିମ ମୌସୁମୀ ବାୟୁଦ୍ୱାରା ବର୍ଷା ହୁଏ । (ମୌସୁମୀ ଶବ୍ଦ ଆରବୀ "ମୌସିମ୍" ଶବ୍ଦରୁ ଉତ୍ପନ୍ନ; ମୌସିମ୍ ଶବ୍ଦର ଅର୍ଥ ଋତୁ; ଜୁନଠାରୁ ଅକ୍ଟୋବର ପର୍ଯ୍ୟନ୍ତ ଏହି ବାୟୁ ବହୁଥିବାରୁ ତାହାର ଏପରି ନାମ ହୋଇଅଛି) । ଏପ୍ରିଲଠାରୁ ଜୁନ ପର୍ଯ୍ୟନ୍ତ ସୂର୍ଯ୍ୟୋତ୍ତାପରେ ଉତ୍ତପ୍ତ ସ୍ଥଳ-ଭାଗର ବାୟୁ ହାଲୁକା ହୋଇ ଉପରକୁ ଉଠିଯିବାରୁ ସେହି ବାୟୁର ସ୍ଥାନ ପୂରଣ କରିବା ନିମନ୍ତେ ଭାରତ-ମହାସାଗରରୁ ଯେଉଁ ଜଳୀୟ ବାଷ୍ପପୂର୍ଣ୍ଣ ବାୟୁ ପ୍ରବାହିତ ହୁଏ, ତାହାକୁ ମୌସୁମୀ ବାୟୁ କହନ୍ତି ।

ପୂର୍ବ ଏବଂ ଉତ୍ତର-ବଙ୍ଗଳାରେ, ବିଶେଷତଃ ହିମାଳୟର ପାଦଦେଶରେ ସର୍ବାପେକ୍ଷା ଅଧିକ ପରିମାଣରେ ବୃଷ୍ଟିପାତ ହୁଏ । ଜଲପାଇଗୁଡ଼ି ଜିଲ୍ଲାରେ ଅବସ୍ଥିତ ବକ୍‌ସାରରେ ବଙ୍ଗଳା ହତା ମଧ୍ୟରେ ସର୍ବାପେକ୍ଷା ଅଧିକ



ସମୁଦ୍ରର ଉପକୂଳ ।

ବୃଷ୍ଟି ହୁଏ । ଉତ୍ତର-ପଶ୍ଚିମ ବିହାରସ୍ଥିତ ସାହାବାଦରେ ସର୍ବାପେକ୍ଷା ଅଳ୍ପ ବୃଷ୍ଟିପାତ ହୁଏ ।

ଧାନ୍ୟ ବଙ୍ଗଳାର ସର୍ବପ୍ରଧାନ ଫସଲ । ଧାନ୍ୟ ତିନପ୍ରକାର ଯଥା ;

(୧) ଆଶୁ ବା ବଆଲ ଧାନ, ବୈଶାଖ ଏହାର ବୁଣା ସମୟ ଏବଂ ବର୍ଷା-ଶେଷ କଟା ସମୟ । (୨) ଶାରଦ ଧାନ, ବୈଶାଖ ବା ଜ୍ୟେଷ୍ଠ ଏହାର ବୁଣା ସମୟ ଓ ମାର୍ଗଶିର ବା ପୌଷ କଟା ସମୟ । (୩) ଡାଲୁଅ ଧାନ, ଏହା ମାର୍ଗଶିରରେ ବୁଣା ଯାଇ ଖରାଦିନ ଶେଷରେ କଟାଯାଏ । ଗହମ ବିହାରରେ ବିଶେଷତଃ ଶୋନନଦୀର କେନାଲଦ୍ୱାରା ଜଳପ୍ରାପ୍ତ ଭୂମିରେ ଜନ୍ମେ । କଲିକତା, ପାବନା, ଢାକା ଏବଂ ଜଲପାଇଗୁଡ଼ିର ଚତୁଃପାର୍ଶ୍ୱ-ସ୍ଥିତ ଜିଲ୍ଲାମାନଙ୍କରେ ଝୋଟ ପ୍ରଚୁର ପରିମାଣରେ ଜନ୍ମେ । କଲିକତା ନିକଟରେ ଝୋଟରୁ ଜାତ ହେବା ତନ୍ତୁଦ୍ୱାରା ଅଖା ପ୍ରଭୃତି ଜିନିଷ ପ୍ରସ୍ତୁତ କରାଯାଏ । ରାଜସାହି, ମାଲଦହ ଏବଂ ମୁର୍ଶିଦାବାଦ ଜିଲ୍ଲାମାନଙ୍କରେ



ଝୋଟ ।

ରେଶମ ପ୍ରସ୍ତୁତ ହୁଏ । ରାଣୀଗଞ୍ଜ, ବରାକର (ବର୍ଦ୍ଧମାନ ଜିଲ୍ଲା) ଏବଂ ଗିରିଡ଼ି (ହଜାରିବାଗ ଜିଲ୍ଲା) ରେ ପଥରକୋଇଲା ମିଳେ । ଆଖୁ, ନୀଲ

(ବହାରରେ), ହଳଦ, ପାନ, ଗୁଆ, ଗଞ୍ଜା (ରାଜସାହ ଜଲ୍ଲାର ନାଉଗାଁ ସବ୍‌ଡବଜନରେ) ଅଫିମ, ଧୂଆଁପତ୍ର, ଚା (ଦାର୍ଜିଲିଙ୍ଗ ପବତରେ ଓ ତରାଇ ଅଞ୍ଚଳରେ ଏବଂ ଜଲ୍‌ପାଇଗୁଡର ଦୁଆର ଅଞ୍ଚଳରେ) ଓ ସିଙ୍କୋନା ବା କୁଇନାଇନ୍ (ଦାର୍ଜିଲିଙ୍ଗ ପାହାଡରେ) ହୁଏ ।

ପେସି, ସୋରଷ, ଗବ ଏବଂ ରାଶି ତେଲଦ ବୀଜ ଅଟେ । ସାରଣ ଜଲ୍ଲାର ରେବଲ୍‌ଗଞ୍ଜ ତେଲଦ ବୀଜର ପ୍ରଧାନ ବାଣିଜ୍ୟ ସ୍ଥଳ ।

କଲକତାରୁ ରପ୍ତାନ ହେବା ପଦାର୍ଥମାନଙ୍କର ନାମ ଯଥାକ୍ରମେ ନମ୍ନରେ ଦଆଗଲ୍‌ :—

ଝୋଟ, ଚା, ଅଫିମ, ତେଲଦମଞ୍ଜି, ଝୋଟରୁ ପ୍ରସ୍ତୁତ ଜନସ, ଚାଉଳ, ନୀଲ, ଅପରଷ୍କୃତ ଚମଡ଼ା ଓ ଚର୍ମ, ଲାଖ (ଛୋଟନାଗପୁର ଓ ପଶ୍ଚିମ ବର୍ଦ୍ଧମାନର ଜଙ୍ଗଲସ୍ଥିତ ପଲାଶ, ବର ଏବଂ ପିପ୍ପଳ ବୃକ୍ଷରୁ ଏକପ୍ରକାର କୀଟଦ୍ୱାରା ଉତ୍ପନ୍ନ ଅଠା), କପାଗୁଲାରୁ ପ୍ରସ୍ତୁତ ହୋଇଥିବା ଦ୍ରବ୍ୟ, ରେସମ ଓ ଗହମ ।

## ମାନଚତ୍ର ଅଙ୍କନ କରବା ବଷୟରେ ଉପଦେଶ ।

ପ୍ରଥମ ଶ୍ରେଣୀର ଛାତ୍ରମାନଙ୍କୁ ନକ୍‌ଶାର ଅର୍ଥ ବୁଝାଇ ଦେବାର ଉଚତ । ଏକ ଦେଶର ମାନଚତ୍ର ତାହାର ନକ୍‌ସାମାତ୍ର । କୌଣସି ବସ୍ତୁ ଏକ ସମତଳ ଭୂମି ଉପରେ, ଯଥା ଗୃହର ଚଟାଣ ଉପରେ, ଯେତେ ପରମାଣ ସ୍ଥାନ ଅଧିକାର କରେ ତାହାହିଁ ତାହାର ନକ୍‌ଶା । କାଗଜରେ ଯେଉଁ ବସ୍ତୁର ନକ୍‌ଶା ଟାଣିବାକୁ ହେବ, ତାହା ଯଦ କାଗଜ ଅପେକ୍ଷା ବଡ ହୁଏ, ତେବେ ସେହ ବସ୍ତୁକୁ ଅନୁପାତ ଅନୁସାରେ ସାନ କର କାଗଜ ଉପରେ ଆଙ୍କିବା ନମନ୍ତେ ସ୍କେଲ୍ ବା ନର୍ଦ୍ଦିଷ୍ଟ ପରମାଣ ପୂର୍ବରୁ ନରୂପଣ କରବାକୁ ହୁଏ ।

ମନେକର ଛଅଫୁଟ ଲମ୍ବ ଓ ଦୁଇଫୁଟ ଚୌଡାର ଖଣ୍ଡେ ସ୍କୁଲ-ମେଜର ନକ୍‌ଶା କରବାକୁ ହେବ । ମନେକର ଏସ୍ଥଳରେ ଏହାକୁ ଏହାର ପ୍ରକୃତ ଆୟତନର ଦ୍ୱାଦଶାଂଶ ଦ୍ୱାରା ପ୍ରକାଶ କରବା ସୁବଧାଜନକ । ତାହାହେଲେ ପ୍ରତ୍ୟେକ ଫୁଟକୁ ଏକ ଇଞ୍ଚରେ ପ୍ରକାଶ କରବାକୁ ହେବ ଏବଂ

ସେହି କାରଣରୁ ନକ୍ସାରେ ମେଜର ଦୈର୍ଘ୍ୟ ତନି ଇଞ୍ଚଦ୍ୱାରା ଏବଂ ପ୍ରସ୍ଥ ଦୁଇ ଇଞ୍ଚଦ୍ୱାରା ପ୍ରକାଶିତ ହେବ ।

ଇଞ୍ଚ ।

୨ ଇଞ୍ଚ ।

ନିମ୍ନରେ ଯେଉଁ ନକ୍ସା ଦିଆଗଲା ତହିଁରେ ୧୦୦ ହାତକୁ ଏକ ଇଞ୍ଚ ଦ୍ୱାରା ପ୍ରକାଶ କରାଯାଇଅଛି ।



ଯେବେ କୌଣସି ସ୍କୁଲ ହତାର ଦୈର୍ଘ୍ୟ ୬୪ ହାତ ଓ ପ୍ରସ୍ଥ ୧୬ ହାତ ହୁଏ, ତେବେ ୮ ହାତକୁ ଏକ ଇଞ୍ଚରେ ବ୍ୟକ୍ତ କରି ଆମ୍ଭେମାନେ ଏହାର ଏକ ନକ୍ସା ପ୍ରସ୍ତୁତ କରି ପାରିବା ।



ଏହାଠାରୁ ଅଧିକ ବଡ଼ ସ୍କେଲ**ରେ ମାନଚିତ୍ର** କରାଯାଏ । ମନେକର

ମାଇଲ-ସ୍କେଲ ତନ ଇଞ୍ଚ ଦୀର୍ଘ ଏବଂ ତଦ୍ଦ୍ୱାରା ୬ ମାଇଲ ବ୍ୟକ୍ତ ହୋଇ ଅଛି । ତାହାହେଲେ ଜଣାଗଲା ଯେ ଏକ ମାଇଲକୁ ଅର୍ଦ୍ଧ ଇଞ୍ଚରେ ବ୍ୟକ୍ତ କରି ମାନଚିତ୍ର ଟଣା ଯାଇଅଛି । ଯେତେ ଇଚ୍ଛା ସେତେ ସ୍କେଲରେ ମାନଚିତ୍ର ଟଣା ହେଲେ ସୁଦ୍ଧା ସମାନୁପାତ ଅଙ୍କଦ୍ୱାରା କେତେ ଦୂରତା କାହାଦ୍ୱାରା ବ୍ୟକ୍ତ ହୋଇଅଛି ତାହା ଜଣା ପଡ଼ିବ ।

ଏକ ମାଇଲକୁ ¼ ଇଞ୍ଚଦ୍ୱାରା ବ୍ୟକ୍ତ କଲେ ମାନଚିତ୍ରରେ ୧୦ ଇଞ୍ଚ ଦ୍ୱାରା କେତେ ଦୂରତା ପ୍ରକାଶିତ ହେବ ।

¼ ଇଞ୍ଚ = ୧ ମାଇଲ

୧ ଇଞ୍ଚ = ୪ ମାଇଲ

୧୦ ଇଞ୍ଚ = ୪ × ୧୦ = ୪୦ ମାଇଲ

ଗତ ଲୋକ ଗଣନା ଅନୁସାରେ ବଙ୍ଗଳାର ଲୋକ ସଂଖ୍ୟା ୭୪,୭୪୪,୮୬୬ । ଏଥିମଧ୍ୟରୁ ହିନ୍ଦୁ ୪୯,୬୮୭,୩୯୧ ଏବଂ ମୁସଲମାନ ୨୫,୪୯୫,୩୪୪ । ବଙ୍ଗଳାର ଅତି ଅଳ୍ପସଂଖ୍ୟକ ଲୋକ ନଗରବାସୀ ଅଟନ୍ତି । ୫୦୦୦୦ ରୁ ଅଧିକ ଲୋକଯୁକ୍ତ ନଗର ସଂଖ୍ୟା ଏ ପ୍ରଦେଶରେ ଅପେକ୍ଷାକୃତ ଅତି ଅଳ୍ପ ଦେଖା ଯାଏ । କଲିକତା, ୯୪୪,୯୯୦; ହାବଡ଼ା ୧୫୭,୮୪୭; ପାଟନା ୧୩୫,୧୭୨; ଢାକା ୯୦,୭୭୯; ଗୟା ୭୦,୧୮୭; ଦରଭଙ୍ଗା ୭୫,୯୯୦; ଭାଗଲପୁର ୭୫,୨୭୩; ଛାପରା ୪୫,୩୯୨; ମୁଙ୍ଗେର ୩୫,୮୮୩ ଏଗୁଡ଼ିକ ବଙ୍ଗଳାର ପ୍ରଧାନ ନଗର ଅଟନ୍ତି । କଟକ ନଗରରେ ଲୋକସଂଖ୍ୟା ପ୍ରାୟ ୭୦ ସହସ୍ର ।

ପ୍ରେସିଡେନ୍ସି, ରାଜସାହି, ଢାକା ଏବଂ ଚଟ୍ଟଗ୍ରାମ ବିଭାଗମାନଙ୍କୁ ଛାଡ଼ି ଅନ୍ୟାନ୍ୟ ବିଭାଗମାନଙ୍କରେ ହିନ୍ଦୁମାନଙ୍କର ସଂଖ୍ୟା ମୁସଲମାନମାନଙ୍କ ଅପେକ୍ଷା ଖୁବ୍ ଅଧିକ । ପ୍ରେସିଡେନ୍ସି ବିଭାଗରେ ହିନ୍ଦୁ ଓ ମୁସଲମାନ

# ପ୍ରେସିଡେନ୍ସି ବିଭାଗ

ମାନଦଣ୍ଡ, ୧ ଇଞ୍ଚ=୫୦ମାଇଲ



ବିଭାଗ ସୀମା---------- ନଦୀ ——————
ଜିଲ୍ଲା ସୀମା-·-·-·-·-·- ଅଗ୍ନିବୋଟ ରାସ୍ତା··············

ପ୍ରାୟ ସମସଂଖ୍ୟକ, କିନ୍ତୁ ରାଜସାହି ଏବଂ ପୂର୍ବବଙ୍ଗର ବିଭାଗମାନଙ୍କରେ ହିନ୍ଦୁମାନଙ୍କ ଅପେକ୍ଷା ମୁସଲମାନମାନଙ୍କ ସଂଖ୍ୟା ପ୍ରାୟ ଶତକରା ୫୦ ଅଧିକ । ବଙ୍ଗଳାର ଛୋଟଲାଟଙ୍କ ଅଧୀନସ୍ଥ ରାଜ୍ୟ ୯ ଗୋଟି ବିଭାଗରେ ବିଭକ୍ତ । ପ୍ରତ୍ୟେକ ବିଭାଗ ଜଣେ୨ କମିଶନରଙ୍କ ଅଧୀନ, ମାତ୍ର ପ୍ରତ୍ୟେକର ଜିଲ୍ଲା ସଂଖ୍ୟା ସମାନ ନୁହେ । ପ୍ରତ୍ୟେକ ଜିଲ୍ଲାର ଶାସନର ସୁବିଧା ପାଇଁ ତାହା ଏକାଧିକ ସବଡିଭିଜନରେ ବିଭକ୍ତ ।

ନଅଗୋଟି ବିଭାଗ, ଯଥା :

| | | ଜନ ସଂଖ୍ୟା । |
|---|---|---|
| ପ୍ରେସିଡେନ୍ସି ବିଭାଗ | ... | ୮୯,୯୧,୩୭୭ |
| ବର୍ଦ୍ଧମାନ | ... ... | ୮୨,୪୪,୮୪୭ |
| ରାଜସାହି | ... ... | ୮୪,୮୯,୭୮୮ |
| ଢାକା | ... ... ... | ୧,୦୮,୦୭,୭୭୦ |
| ଚଟ୍ଟଗାଁ | ... ... | ୪୭,୪୪,୨୫୯ |
| ପାଟନା } ବିହାର | ... | ୧,୫୫,୧୨,୧୯୭ |
| ଭାଗଲପୁର } ବିହାର | ... | ୮୭,୨୧,୪୮୪ |
| ଓଡ଼ିଶା | ... ... | ୪୩,୪୯,୪୫୨ |
| ଛୋଟନାଗପୁର | ... ... | ୪୯,୦୧,୦୮୭ |

ପ୍ରେସିଡେନ୍ସି ବିଭାଗ ।

ପ୍ରେସିଡେନ୍ସି ବିଭାଗରେ ଜିଲ୍ଲାମାନ ଯଥା,

ଚବିଶପରଗଣା,

ନଦୀଆ, ମୁର୍ଶିଦାବାଦ

ଯଶୋର, ଖୁଲନା

ଭାରତବର୍ଷର ରାଜଧାନୀ କଲିକତା ହୁଗୁଳିନଦୀ ଉପରେ ଅବସ୍ଥିତ । ହୁଗୁଳିନଦୀ ଯେଉଁଠାରେ ବଙ୍ଗୋପସାଗରରେ ପଡ଼ିଅଛି, ସେଠାରୁ



ହୁଗୁଳି ନଦୀ, କଲିକତା ।

ଅର୍ଥାତ୍ ସାଗରଦ୍ୱୀପଠାରୁ ଏହା ୮୦ ମାଇଲ ଦୂରବର୍ତ୍ତୀ । ଗୋଟିଏ ପୋଲଦ୍ୱାରା କଲିକତା ହାବଡ଼ା ସଙ୍ଗେ ସଂଯୁକ୍ତ ହୋଇଅଛି । ହାବଡ଼ା ଏକ ସ୍ୱତନ୍ତ୍ର ମ୍ୟୁନସିପାଲଟୀର ଅଧୀନ ଓ ଏଥିରେ ବର୍ଦ୍ଧମାନ କମିଶନରଙ୍କ ଅଧୀନସ୍ଥ ଏକ ଜିଲ୍ଲାର ସଦର ମହକୁମା ସ୍ଥାପିତ ।

ଇଂରେଜମାନେ କାଲୀଘାଟ, ସୁତାନୁଟୀ ଏବଂ ଗୋବିନ୍ଦପୁର ଏହି ତିନିଗୋଟି ଗ୍ରାମ ସମ୍ରାଟ ଅରଙ୍ଗଜେବଙ୍କ ପୌତ୍ର ଓ ବଙ୍ଗଳାର ସୁବାଦାର

ଆରଙ୍ଗଜେବଙ୍କଠାରୁ ୧୬୯୮ ଖ୍ରୀଷ୍ଟାବ୍ଦରେ କ୍ରୟ କରି ଆଧୁନିକ କଲି-କତାର ଭିତ୍ତି ସଂସ୍ଥାପନ କରିଥିଲେ । ୧୭୫୬ ଖ୍ରୀଷ୍ଟାବ୍ଦରେ ସିରାଜ-



ତାଳବଗିଚା ବାଟ, ଉଦ୍ଭିଦ ବଗିଚା, କଲିକତା ।

ଉଦ୍ଦୌଲାଙ୍କ ହସ୍ତଗତ ହୋଇଥିବା ପୁରାତନ ଫୋର୍ଟ ଉଇଲିଅମ୍ ଦୁର୍ଗର ଚତୁଷ୍ପାର୍ଶ୍ୱରେ ଏହି ନଗର କ୍ରମେ ବୃଦ୍ଧିପ୍ରାପ୍ତ ହୋଇଥିଲା । ନବାବଙ୍କ ସଙ୍ଗେ ଇଂରେଜମାନେ ସନ୍ଧିସ୍ଥାପନ କରିବାପରେ ବର୍ତ୍ତମାନ ଥିବା ଫୋର୍ଟ ଉଇଲିଅମ ଦୁର୍ଗ ନିର୍ମିତ ହୋଇଅଛି । ନଗରର ଦକ୍ଷିଣପାର୍ଶ୍ୱସ୍ଥିତ ବିସ୍ତୀର୍ଣ୍ଣ ମଇଦାନ ଉପରେ ଆଧୁନିକ ଫୋର୍ଟ ଉଇଲିଅମ ଦୁର୍ଗ ଅବସ୍ଥିତ । ଏହି

ଦୁର୍ଗର ଉତ୍ତରରେ ଭାରତ ରାଜପ୍ରତିନିଧିଙ୍କର ଶୀତକାଳୀନ ରାଜପ୍ରାସାଦ ଏବଂ ହାଇକୋର୍ଟ ଅଛି ।

କଲିକତାର ଅନ୍ୟାନ୍ୟ ବୃହତ୍ ଅଟ୍ଟାଳିକାମାନଙ୍କ ମଧ୍ୟରେ ହାବଡ଼ା ପୋଲ ନିକଟରେ ଥିବା ଟାଙ୍କଶାଲ, ପ୍ରେସିଡେନ୍ସି କଲେଜ, କଲିକତା ବିଶ୍ୱବିଦ୍ୟାଳୟର ସିନେଟ ସଭାଗୃହ, ଏବଂ ଉତ୍ତରରେ ଦେଶୀୟ ଲୋକ-ମାନଙ୍କ ବସତି ମଧ୍ୟସ୍ଥିତ କାଶିପୁରର ସରକାରୀ ଲୌହ ଓ ଇସ୍ପାତ ତିଆରି କାରଖାନା ଘର ଉଲ୍ଲେଖଯୋଗ୍ୟ ।

କଲିକତାର ବିପରୀତପାର୍ଶ୍ୱ ଏବଂ ହାବଡ଼ାର ଦକ୍ଷିଣରେ ଅବସ୍ଥିତ ଶିବପୁରଠାରେ ସରକାରୀ ଇଞ୍ଜିନିଅରିଂ କଲେଜ ଏବଂ ଉଦ୍ଭିଦ ବିଦ୍ୟା-ଆଲୋଚନା ପାଇଁ ବୃହତ୍ ଉଦ୍ୟାନ ଅଛି ।

କଲିକତାର ଉତ୍ତରରେ ଏବଂ ହୁଗୁଳିର ଦକ୍ଷିଣକୂଳରେ, ଦମ୍‌ଦମ୍ ଓ ବାରାକପୁରଠାରେ ସୈନ୍ୟନିବାସମାନ ଅଛି । ବାରାକପୁରର ବିପରୀତ ପାର୍ଶ୍ୱରେ ନଦୀର ଆରପାଖେ ପୁରାତନ ଦିନାମାର ଉପନିବେଶ ଶ୍ରୀରାମପୁର ଅବସ୍ଥିତ । ଏହା ୧୮୪୫ ଖ୍ରୀଷ୍ଟାବ୍ଦରେ ଇଂରାଜମାନଙ୍କ ହସ୍ତଗତ ହୋଇଥିଲା ।

ନଦିଆଜିଲ୍ଲା ୨୪ପରଗନାର ଉତ୍ତରରେ ଅଛି । ଏହି ଜିଲ୍ଲାର ସଦରମହକୁମା ଜେଲଙ୍ଗୀ-କୂଳସ୍ଥିତ କୃଷ୍ଣନଗରରେ ଅବସ୍ଥାପିତ । ନବଦ୍ୱୀପ ସଂସ୍କୃତ ଟୋଲ ନିମନ୍ତେ ପ୍ରସିଦ୍ଧ । ଭାଗୀରଥୀକୂଳସ୍ଥିତ ନଦିଆ ଏବଂ ହୁଗୁଳିନଦୀ କୂଳସ୍ଥିତ ଶାନ୍ତିପୁର ନଦିଆ ଜିଲ୍ଲାର ଆଉ ଦୁଇଗୋଟି ବଡ଼ ସହର ।

ମୁର୍ଶିଦାବାଦ ଜିଲ୍ଲା ନଦିଆ ଜିଲ୍ଲାର ଉତ୍ତରରେ ଅବସ୍ଥିତ ଏବଂ ଜେଲଙ୍ଗୀ ନଦୀଦ୍ୱାରା ତାହାଠାରୁ ବିଭକ୍ତ । ଭାଗୀରଥୀକୂଳସ୍ଥିତ ବଙ୍ଗଳାର ନବାବମାନଙ୍କର ପୁରାତନ ରାଜଧାନୀ ମୁର୍ଶିଦାବାଦ ଏହି ଜିଲ୍ଲାର ପ୍ରଧାନ ନଗର । ଏହି ନଗରର ସଂସ୍ଥାପକ ମୁର୍ଶିଦ୍ କୁଲିଖାଁଙ୍କ ନାମାନୁସାରେ

ଏହାର ନାମ ହୋଇଅଛି । ବଙ୍ଗଳାର ନାମମାତ୍ର ନବାବ୍ ନାଜିମ୍ ବର୍ତ୍ତମାନ ଏଠାରେ ବାସ କରନ୍ତି । ଏହି ସ୍ଥାନରୁ ୫ ମାଇଲ ଦୂରରେ ଥିବା ବରହମ୍‌ପୁର ନଗରରେ ଏହି ଜିଲ୍ଲାର ସଦରମହକୁମାମାନ ଅଛି । ହିନ୍ଦୁମାନଙ୍କ ବାସନର ପ୍ରଧାନ ଉପକରଣ କଂସା କାଚଠାରେ ପ୍ରଚୁର ପରିମାଣରେ ପ୍ରସ୍ତୁତ ହୁଏ । ଏହା ବରହମପୁରର ପଶ୍ଚିମରେ ଅବସ୍ଥିତ ।

ଚବିଶପରଗଣାର ପୂର୍ବରେ ଯଶୋର ଜିଲ୍ଲା । ଏହାର ସଦର ମହକୁମାମାନ ଭୈରବ ନଦୀକୂଳସ୍ଥିତ ଯଶୋର ନଗରରେ ଅଛି । ଏହି ଜିଲ୍ଲାର ସର୍ବପ୍ରଧାନ ଜନଶାଳୀ ସହର କୋଟ୍‌ଚାନ୍ଦପୁର କବତକ୍ଷ ନଦୀକୂଳରେ ଅବସ୍ଥିତ ।

ଖୁଲନାଜିଲ୍ଲାକୁ ଯଶୋର ଜିଲ୍ଲାରୁ ବିଚ୍ଛିନ୍ନ କରି ଯାଇଅଛି । ଏହାର ସଦରମହକୁମାମାନ ଭୈରବକୂଳସ୍ଥିତ ଯଶୋର ନଗରରେ ଅବସ୍ଥାପିତ । ଏଠାରେ ସୁନ୍ଦରବନରୁ ନୌକାଦ୍ୱାରା ଆନୀତ ବାଣିଜ୍ୟ-ଦ୍ରବ୍ୟମାନଙ୍କର ସରବରାହ କରି ଯାଉ ଥିବାରୁ ଏହା ସମୃଦ୍ଧିମନ୍ତ ହୋଇଅଛି ।

### ବର୍ଦ୍ଧମାନ ବିଭାଗ ।

ବର୍ଦ୍ଧମାନ ବିଭାଗର ଉତ୍ତରରେ ସାନ୍ତାଲ ପରଗଣା ଏବଂ ମୁର୍ଶିଦାବାଦ ଜିଲ୍ଲା ; ପୂର୍ବରେ ଭାଗୀରଥୀ ; ପଶ୍ଚିମରେ ମୟୂରଭଞ୍ଜ ରାଜ୍ୟ ( ଓଡିଶା ) ଏବଂ ଛୋଟ ନାଗପୁରରେ ମାନଭୂମ ଓ ସିଂହଭୂମ ଜିଲ୍ଲାମାନ ; ଏବଂ ଦକ୍ଷିଣରେ ବଙ୍ଗୋପସାଗର ଓ ବାଲେଶ୍ୱର ଜିଲ୍ଲା ( ଓଡିଶା ) ।

ଉତ୍ତରରେ ବୀରଭୂମ ; ତାହାର ଦକ୍ଷିଣରେ ବର୍ଦ୍ଧମାନ ; ବର୍ଦ୍ଧମାନର ଦକ୍ଷିଣ ପଶ୍ଚିମରେ ବାଙ୍କୁଡ଼ା, ଓ ଦକ୍ଷିଣ-ପୂର୍ବରେ ହୁଗୁଲି ; ଏବଂ ହାବଡାର ପଶ୍ଚିମ ଓ ବାଙ୍କୁଡାର ଦକ୍ଷିଣରେ ଅବସ୍ଥିତ ଏବଂ ଏହି ବିଭାଗର ଦକ୍ଷିଣ ପଶ୍ଚିମବର୍ତ୍ତୀ ମେଦନୀପୁର ଏହି ପାଞ୍ଚ ଗୋଟି ଜିଲ୍ଲା ବର୍ଦ୍ଧମାନ ବିଭାଗର ଅନ୍ତର୍ଗତ ।

ଛୋଟନାଗପୁର ଓ ଓଡଶାର ପର୍ବତମାନ କେତେ ଗୁଡଏ ନଦୀର ଉତ୍ପତ୍ତି ସ୍ଥଳ । ଅଜୟ୍ ନଦୀ ବର୍ଦ୍ଧମାନ ଜିଲ୍ଲାରୁ ବୀରଭୂମ ଜିଲ୍ଲାକୁ ବିଭିନ୍ନ କରି କଟୱ୍ୟାଠାରେ, ଭାଗୀରଥୀରେ ପଡ଼ିଅଛି ।



ବୌଦ୍ଧ ବାଇବର ।

ଦାମୋଦର ନଦୀ ବର୍ଦ୍ଧମାନକୁ ବାଙ୍କୁଡ଼ାରୁ ବିଭିନ୍ନ କରି ଫଲ୍‌ଟାର ବିପରୀତ ପାର୍ଶ୍ୱରେ ହୁଗୁଲୀରେ ପଡ଼ିଅଛି ।

ଦାରକେଶ୍ୱର ନଦୀ ବାଙ୍କୁଡ଼ା ଜିଲ୍ଲା ମଧ୍ୟଭାଗ ଦେଇ ରୂପନାରାୟଣ ନାମରେ ଦାମୋଦରର ୭ ମାଇଲ୍ ତଳେ ହୁଗୁଲୀ ସଙ୍ଗେ ମିଳିତ ହୋଇ ଅଛି ।

ବର୍ଦ୍ଧମାନ ଜିଲ୍ଲା—ବର୍ଦ୍ଧମାନ ଏବଂ ରାଣୀଗଞ୍ଜ ଏହି ଜିଲ୍ଲାର ଦୁଇଗୋଟି ପ୍ରଧାନ ନଗର । ବର୍ଦ୍ଧମାନ ନଗର ବଙ୍ଗଳାର ଏକ ପ୍ରଧାନ ଜମିଦାର

ବର୍ଦ୍ଧମାନ ମହାରାଜାଙ୍କର ବାସସ୍ଥାନ । ଦାମୋଦର କୂଳରେ ଅବସ୍ଥିତ ରାଣୀଗଞ୍ଜ ପଥର କୋଇଲା ରପ୍ତାନିର କେନ୍ଦ୍ରସ୍ଥଳ ।

ବୀରଭୂମ ଜିଲ୍ଲା—ଏହି ଜିଲ୍ଲାର ସଦର ମହକୁମାମାନ ସୁରୀଠାରେ ଅବସ୍ଥାପିତ ।

ବାଙ୍କୁଡ଼ା ଜିଲ୍ଲା—ରୂପନାରାୟଣ ତୀରବର୍ତ୍ତୀ ବାଙ୍କୁଡ଼ା ନଗରରେ ଏହି ଜିଲ୍ଲାର ସଦର ମହକୁମାମାନ ଅଛି । ବିଷ୍ଣୁପୁର ଏହି ଜିଲ୍ଲାର ଏକ ସବ୍‌ଡିଭିଜନର ସଦରମହକୁମା ଏବଂ ଏହା ବାଙ୍କୁଡ଼ାପରି ଜନଶାଳୀ ।

ମେଦନୀପୁର ଜିଲ୍ଲା—ଏହା ବଙ୍ଗଳାର ଏକ ବୃହତ୍ତମ ଜିଲ୍ଲା । କଂସାଇ ନଦୀକୂଳସ୍ଥିତ ମେଦନୀପୁର ନଗରରେ ଏହାର ସଦର ମହକୁମାମାନ ଅଛି ।

ହୁଗୁଳି ଜିଲ୍ଲା—ବଙ୍ଗଳାରେ ଇଉରୋପୀୟମାନଙ୍କର ସର୍ବପ୍ରଥମ ଉପନିବେଶ ସ୍ଥଳ ହୁଗୁଳି ଏହି ଜିଲ୍ଲାର ପ୍ରଧାନ ନଗର । ସରସ୍ୱତୀ ନଦୀରେ ପଙ୍କ ପଡ଼ି ହୁଗୁଳିଠାରୁ ୫ ମାଇଲ ଦୂରବର୍ତ୍ତୀ ସାତଗାଁ ନଗରର ଗୌରବ ଲୁପ୍ତ ହୁଅନ୍ତେ, ପୋର୍ତ୍ତୁଗୀଜମାନେ ୧୫୬୭ ଖ୍ରୀଷ୍ଟାବ୍ଦରେ ଏଠାରେ ପ୍ରଥମେ ଉପନିବେଶ ସ୍ଥାପନ କରିଥିଲେ । ଆଇନ ଆକବରୀରେ ସାତଗାଁର ନାମ ଏକ ସରକାର ବା ରାଜସ୍ୱ ବିଭାଗ ବୋଲି ଲେଖାଅଛି । ଜାହାଙ୍ଗୀରଙ୍କ ସମୟରେ ପର୍ତ୍ତୁଗୀଜ ଉପନିବେଶ ବିନଷ୍ଟ ହେବା ଉତ୍ତାରୁ ଇଂରେଜମାନେ ୧୬୪୦ ଖ୍ରୀଷ୍ଟାବ୍ଦରେ ଏହାକୁ ଅଧିକାର କରିଥିଲେ ।

ହୁଗୁଳିର ଏକ ଅଂଶ ଚୁଁଚୁଡ଼ା ଓଲନ୍ଦାଜମାନଙ୍କ କର୍ତ୍ତୃକ ଅଧିକୃତ ହୋଇଥିଲା । ହୁଗୁଳିନଦୀ ଉପରେ, ଚୁଁଚୁଡ଼ା ତଳେ ଅବସ୍ଥିତ, ଚନ୍ଦନନଗର ୧୬୭୩ ଖ୍ରୀଷ୍ଟାବ୍ଦରେ ଫରାସିମାନଙ୍କର ଅଧିକାରଭୁକ୍ତ ହୋଇଥିଲା । ପ୍ରସିଦ୍ଧ ତାରକେଶ୍ୱର ମନ୍ଦିର ହୁଗୁଳି ଜିଲ୍ଲାରେ ଅବସ୍ଥିତ ।

## ରାଜସାହି ବିଭାଗ ।

ରାଜସାହି ବିଭାଗର ଉତ୍ତରରେ ହିମାଳୟ ପର୍ବତ; ପୂର୍ବରେ ବ୍ରହ୍ମପୁତ୍ର ନଦୀ; ଦକ୍ଷିଣ ଏବଂ ପଶ୍ଚିମରେ ଗଙ୍ଗା ବା ପଦ୍ମା; ପୂର୍ବରେ ନେପାଳ,

ଉଚ୍ଚ ପ୍ରାଥମିକ ଭୂଗୋଳପାଠ ।

# ରାଜସାହୀ ବିଭାଗ

ମାନଦଣ୍ଡ ୧" = ୪୮ମାଇଲ




ବିଭାଗ ସୀମା ------
ଜିଲ୍ଲା ସୀମା ......



ଭୁଟୀଆ ପରିବାର ।

ମେଚୀ, ଏବଂ ମହାନନ୍ଦା ନଦୀମାନ ଏବଂ ପୂର୍ଣ୍ଣିଆ ଓ ମାଲଦହ ଜିଲ୍ଲାମାନ । ଏହାର ଉତ୍ତର-ପୂର୍ବରେ ଭୂଟାନ ସ୍ୱାଧୀନ ରାଜ୍ୟ । କୁଚବେହାର ଓ ଶିକ୍‌ମର କରଦରାଜ୍ୟମାନଙ୍କ ଉପରେ ରାଜସାହି ବିଭାଗର କମିଶନରଙ୍କ କଥିତ ପରାମର୍ଶରେ ଆଧିପତ୍ୟ ଅଛି ।

କାଞ୍ଚନଜଙ୍ଘାଠାରୁ ଦକ୍ଷିଣକୁ ବିସ୍ତୃତ ସିଂହଲୀଲା ପର୍ବତଶ୍ରେଣୀର ଶୀର୍ଷ ପ୍ରଦେଶ ଦେଇ ବ୍ରିଟିଶ ରାଜ୍ୟ ବିସ୍ତାରିତ ହୋଇଅଛି । ଏ ପ୍ରଦେଶରେ ଥିବା କେତେଗୁଡିଏ ସୀମାସୂଚକ ସ୍ତମ୍ଭ ନେପାଳକୁ ବ୍ରିଟିଶ ରାଜ୍ୟରୁ ବିଭିନ୍ନ କରୁଅଛି । କାଞ୍ଚନଜଙ୍ଘାର ଉତ୍ତରରେ ଏହି ସୀମା ପୂର୍ବଦିଗକୁ ଫେରି ଡଙ୍କିଆ ପର୍ବତକୁ ଅନ୍ତର୍ଭୁକ୍ତ କରି ଚୋଲ ପର୍ବତଶ୍ରେଣୀର ପାର୍ଶ୍ୱ ଦେଇ ଦକ୍ଷିଣ ଦିଗକୁ ଆସି ବଙ୍ଗଳାର ସମଭୂମିରେ ପ୍ରବେଶ କରୁଅଛି ।

ରାଜସାହି ବିଭାଗରେ ନିମ୍ନଲିଖିତ ଜିଲ୍ଲାମାନ ଅଛି ;

ଉତ୍ତରରେ ଦାର୍ଜିଲିଙ୍ଗ, ଏବଂ ଜଲପାଇଗୁଡି ; ପୂର୍ବରେ ରଙ୍ଗପୁର ; ପଶ୍ଚିମରେ ଦିନାଜପୁର ; ରଙ୍ଗପୁରର ଦକ୍ଷିଣରେ ବଗୁଡା, ଦକ୍ଷିଣ-ପୂର୍ବରେ ରାଜସାହି, ଓ ଦକ୍ଷିଣ-ପଶ୍ଚିମରେ ପାବନା ।

ପର୍ବତୋପରିସ୍ଥିତ ଦାର୍ଜିଲିଙ୍ଗ, ତାହାର ପାଦଦେଶରେ ଥିବା ତରାଇ ସମଭୂମି, ଏବଂ ଜଲପାଇଗୁଡିର ଯେଉଁ ଅଂଶକୁ ଦୁଆର କୁହାଯାଏ, ଏହି ସ୍ଥାନମାନ ଚା ଉତ୍ପାଦନର ପ୍ରଧାନ ସ୍ଥଳୀ ।

ଶିକ୍‌ମ ରାଜ୍ୟଠାରୁ ତିସ୍ତାର ବୃହତ୍ ଉପନଦୀ ରଙ୍ଗନିତ୍‌ଦ୍ୱାରା, ନେପାଳ ରାଜ୍ୟଠାରୁ ସୀମାନ୍ତସୂଚକ ପର୍ବତଶ୍ରେଣୀ ସିଂହଲୀଲାଦ୍ୱାରା ଏବଂ ଭୂଟାନ ରାଜ୍ୟଠାରୁ ସୀମାନ୍ତସୂଚକ ରେଖା ଚୋଲ ପର୍ବତମାଳାଦ୍ୱାରା, ଦାର୍ଜିଲିଙ୍ଗ ଜିଲ୍ଲା ପୃଥକ୍ ହୋଇଅଛି । ଶିକ୍‌ମର ଅସଭ୍ୟ ଅଧିବାସୀ ଲେପଚ୍‌ମାନେ, ଭୂଟାନର ଭୂଟିଆମାନେ, ଏବଂ ଦାର୍ଜିଲିଙ୍ଗର ତିବତୀୟମାନେ ବୌଦ୍ଧ-ଧର୍ମାବଲମ୍ବୀ । ପୂର୍ବେ ବୌଦ୍ଧ ଧର୍ମ ଭାରତର ସର୍ବାଂଶରେ ପ୍ରଚଳିତ ଥିଲା ।

ନେପାଲ ତିବ୍ବତ ଓ ଶିକିମର ନାଥଙ୍ଗ ମଧ୍ୟ ଦେଇ ତିବ୍ବତରୁ ପଶମ, ନୀଲଗାଈର ଲାଙ୍ଗୁଡ଼, ମୃଗନାଭି ଏବଂ ଟାଙ୍ଗଣ ଦାର୍ଜିଲିଙ୍ଗକୁ ଆସେ । ଶିକିମର ରାଜା ଏବଂ ବ୍ରିଟିଶ ପଲିଟିକାଲ ଏଜେଣ୍ଟ ନାଥଙ୍ଗରେ ବାସ କରନ୍ତି । ଶିକିମର ଲୋକସଂଖ୍ୟା ୫୮,୭୦୨ । ୧୮୯୧ ଖ୍ରୀଷ୍ଟାବ୍ଦର



ଦାର୍ଜିଲିଙ୍ଗ ଲାମା ମଠର ଅନ୍ତର୍ଭାଗ ।

ଲୋକସଂଖ୍ୟାର ସମୟଠାରୁ ବର୍ତ୍ତମାନ ପର୍ଯ୍ୟନ୍ତ ଶତକରା ୯୨ ଜଣ ଲୋକ ବର୍ଦ୍ଧିତ ହୋଇଅଛନ୍ତି ।

ଭୂଟାନର ପାହାଡ଼ମାନଙ୍କ ପଦଦେଶରେ ଅବସ୍ଥିତ ଦୀର୍ଘ ଓ ସଂକୀର୍ଣ୍ଣ ଜଲପାଇଗୁଡ଼ି ଜିଲ୍ଲା ତିସ୍ତା ନଦୀଠାରୁ ସଙ୍କୋଷ ନଦୀ ପର୍ଯ୍ୟନ୍ତ ବିସ୍ତୃତ ହୋଇ ରହିଅଛି । ସଙ୍କୋଷ ନଦୀ ଏହାକୁ ଆସାମର ଗୁଆଲପଡ଼ା ଜିଲ୍ଲାରୁ ପୃଥକ୍ କରୁଅଛି ।

ଏହି ଜିଲ୍ଲାର ସଦର ମହକୁମାମାନ ତିସ୍ତାକୂଳସ୍ଥିତ ଜଲପାଇଗୁଡ଼ି ନଗରରେ ଅବସ୍ଥିତ । ଉକ୍ତ ଜିଲ୍ଲାର ଉତ୍ତର ପାର୍ଶ୍ୱରେ କୁଚବିହାର ଦେଶୀୟ ରାଜ୍ୟ । କୁଚବିହାରର ଲୋକସଂଖ୍ୟା ୫୬୭,୦୩୭ ଏବଂ ଏହାର ରାଜଧାନୀ କୁଚବିହାର ତୋର୍ଷା ନଦୀର କୂଳରେ ଅଛି ।



କୁଲିମାନେ ଚା ତୋଳୁଛନ୍ତି ।

ଜଲପାଇଗୁଡ଼ିର ଦକ୍ଷିଣ ପୂର୍ବରେ ରଙ୍ଗପୁର ଜିଲ୍ଲା । ରଙ୍ଗପୁରର ଦକ୍ଷିଣରେ ବଗୁଡ଼ା ଜିଲ୍ଲା ଏବଂ ପଶ୍ଚିମରେ ଦିନାଜପୁର ଜିଲ୍ଲା ।

ରାଜସାହି ବିଭାଗର ଦକ୍ଷିଣ ପଶ୍ଚିମ କୋଣରେ ତନ୍ନାମକ ଜିଲ୍ଲା । ଏହାର ସଦର ମହକୁମାମାନ ରାମପୁର ବୋଆଲିଆଠାରେ ଗଙ୍ଗା କୂଳରେ ଅବସ୍ଥିତ। ଏହି ବିଭାଗର ଦକ୍ଷିଣ-ପୂର୍ବ କୋଣରେ ପାବନା ଜିଲ୍ଲା । ଏହି ଜିଲ୍ଲାର

ସଦର ମହକୁମା ଉନ୍ନାମକ ନଗର ଗଙ୍ଗାର ଏକଶାଖା ଇଚ୍ଛାମତୀକୂଳରେ ଅଛି । ଇଚ୍ଛାମତୀ ବ୍ରହ୍ମପୁତ୍ର ନଦୀରେ ପଡ଼ିଅଛି ।

## ଢାକା ବିଭାଗ ।

ରାଜସାହି ବିଭାଗର ପୂର୍ବରେ ଢାକା ବିଭାଗ । ଏଥିରେ ଢାକା ମୈମନସିଂହ, ଫରିଦପୁର ଏବଂ ବାଖରଗଞ୍ଜ ଜିଲ୍ଲାମାନ ଅଛି ।



ଗ୍ ବଗିଗ୍‌ର ଦୃଶ୍ୟ ।

ଏହି ବିଭାଗର ଉତ୍ତର-ପଶ୍ଚିମାଂଶ ଏବଂ ମୈମନସିଂହ ଜିଲ୍ଲା ଛଡ଼ା ସମସ୍ତ ଢାକା ବିଭାଗ ତ୍ରିକୋଣ ଭୂମିରୁ ସମୁତ୍ପନ୍ନ । ଏହାର ଉତ୍ତରରେ ଗାରୋ ପର୍ବତମାଳା, ପଶ୍ଚିମରେ ବ୍ରହ୍ମପୁତ୍ର ଓ ମଧୁମତୀ, ଦକ୍ଷିଣରେ ବଙ୍ଗୋପସାଗର, ଏବଂ ପୂର୍ବରେ ଆସାମର ସିଲହଟ ଜିଲ୍ଲା ଓ ଚଟ୍ଟଗାଁର ତ୍ରିପୁରା ଏବଂ ନୂଆଖାଲି ଜିଲ୍ଲାମାନ ।

# ଢାକା ବିଭାଗ

ମାନଦଣ୍ଡ ୧ ଇଞ୍ଚ=୪୮ ମାଇଲ




ବିଭାଗ ସୀମା ........——————
ଜିଲ୍ଲା ସୀମା ........—·—·—
ଲାଇନ ........═══
ଷ୍ଟିମବୋଟ ରାସ୍ତା ........
ଅନ୍ତର୍ଦ୍ଦେଶ ରେଳ - - - - -

ବଙ୍ଗଳାର ଜିଲ୍ଲାମାନଙ୍କ ମଧ୍ୟରେ ମୈମନସିଂହ ବୃହତ୍ତମ । ଏହାର ସଦର ମହକୁମା ମୈମନସିଂହ ନଗରରେ ; ଏହି ନଗର ପ୍ରାଚୀନ ବ୍ରହ୍ମପୁତ୍ର କୂଳରେ ସ୍ଥିତ । ଟାଙ୍ଗାଇଲ, ଜମାଲପୁର ଏବଂ କଶୋରଗଞ୍ଜ ଏହି ଜିଲ୍ଲାର ଅନ୍ୟାନ୍ୟ ପ୍ରଧାନ ନଗରମାନ ।



ଦେଶୀୟ ତନ୍ତ ।

ଢାକା ଜିଲ୍ଲାର ସଦର ମହକୁମା ଢାକା ନଗରରେ ଅବସ୍ଥିତ । ଏହା ବୁଢ଼ୀ ଗଙ୍ଗାକୂଳରେ ସ୍ଥିତ । ଧବଲେଶ୍ୱରୀର ଏକ ଅଂଶକୁ ବୁଢ଼ୀଗଙ୍ଗା ବୋଲାଯାଏ । ସପ୍ତଦଶ ଶତାବ୍ଦୀରେ ଢାକା ମୁସଲମାନମାନଙ୍କର ରାଜଧାନୀ ଥିଲା ଏବଂ ୧୭୦୪ ଖ୍ରୀଷ୍ଟାବ୍ଦରେ ଏଠାରୁ ମୁର୍ଶିଦାବାଦକୁ ସ୍ଥାନାନ୍ତରିତ ହୋଇଥିଲା । ପ୍ରାଚୀନ ବ୍ରହ୍ମପୁତ୍ରର ଏକଶାଖା ଲକ୍ଷ୍ମୀୟା

ଧବଳେଣ୍ୱରେ ପଡ଼ୁଅଛି । ଏହାର ଉପରେ ଥିବା ନାରାୟଣଗଞ୍ଜରେ ଝୋଟ ପ୍ରଚୁର ପରିମାଣରେ ବିକ୍ରୀତ ହୁଏ ।

ଫରିଦପୁର ଜିଲ୍ଲା ଗଙ୍ଗାର ଦକ୍ଷିଣରେ । ଏହାର କିଞ୍ଚିତ୍ ଦକ୍ଷିଣରେ ଏରିଆଲ୍‌ଖାଁ ନାମକ ଏକ ଶାଖା ଗଙ୍ଗାରୁ ବାହାରି ଦକ୍ଷିଣ ପୂର୍ବଦିଗକୁ ପ୍ରବାହିତ ହୋଇ ମେଘନା ମୁହାଣରେ ପଡ଼ୁଅଛି । ମାଦାରିପୁର ନାମକ ଏହି ଜିଲ୍ଲାର ଆଉ ଗୋଟିଏ ବଡ଼ ନଗର ଏହାର କୂଳରେ ଅବସ୍ଥିତ ।

ମେଘନା ମୁହାଣ ମଧ୍ୟସ୍ଥିତ ଦକ୍ଷିଣ ଶାହାବାଜପୁର ଦ୍ୱୀପ ବାଖରଗଞ୍ଜ ଜିଲ୍ଲାର ଅନ୍ତର୍ଗତ । ଏହି ଜିଲ୍ଲାର ସଦର ମହକୁମା ବରିସାଲ ଏରିଲ୍‌ଖାଁର ଏକ ଶାଖା ଉପରେ ଅବସ୍ଥିତ । ମଧୁମତୀ ତୀରରେ ଥିବା ପିରୋଜପୁର ଏହି ଜିଲ୍ଲାର ଦ୍ୱିତୀୟ ପ୍ରଧାନ ନଗର ।

## ଚଟ୍ଟଗ୍ରାମ ବିଭାଗ ।

ଚଟ୍ଟଗ୍ରାମ ବିଭାଗର ଉତ୍ତରରେ ମୈମନସିଂହ ଓ ସିଲହଟ ଏବଂ ପାର୍ବତୀୟ ତ୍ରିପୁରା ନାମକ ଦେଶୀୟ ରାଜ୍ୟ; ପୂର୍ବରେ ଲୁସାଇ ପାହାଡ଼ ଓ ବ୍ରହ୍ମଦେଶ; ଦକ୍ଷିଣରେ ନେଆଫ୍ ନଦୀ ଓ ବ୍ରହ୍ମଦେଶର ଆକାୟବ ଜିଲ୍ଲା; ଏବଂ ପଶ୍ଚିମରେ ବଙ୍ଗୋପସାଗର ଓ ମେଘନା ମୁହାଣ ଏବଂ ନଦୀ ।

ଏହି ବିଭାଗର ଜିଲ୍ଲାମାନ ଯଥା, ଉତ୍ତରରେ ତ୍ରିପୁରା, ତ୍ରିପୁରାର ଦକ୍ଷି-ଣରେ ନୂଆଖାଲି, ଏବଂ ନୂଆଖାଲିର ଦକ୍ଷିଣ-ପୂର୍ବରେ ପାର୍ବତୀୟ ଅଂଶ ସହିତ ଚଟ୍ଟଗ୍ରାମ ଜିଲ୍ଲା । ମେଘନାସ୍ଥିତ ହାତିଆ ଏବଂ ଶନ୍ଦ୍ୱୀପ ଦ୍ୱୀପପୁଞ୍ଜ ନୂଆଖାଲି ଜିଲ୍ଲାର, ଏବଂ ବଙ୍ଗୋପସାଗରସ୍ଥ କୁତବଦିଆ ଓ ମାସଖାଲ୍ ଦ୍ୱୀପମାନ ଚଟ୍ଟଗାଁ ଜିଲ୍ଲାର ଅନ୍ତର୍ଗତ ।

ମେଘନା ଛଡ଼ା କର୍ଣ୍ଣଫୁଲ୍ଲୀ ଓ ଫେନନାମ୍ନୀ ଦୁଇଗୋଟି ପ୍ରଧାନ ନଦୀ ଏହି ବିଭାଗରେ ପ୍ରବାହିତ ହେଉଅଛନ୍ତି । କର୍ଣ୍ଣଫୁଲ୍ଲୀ ଲୁସାଇ ପାହାଡ଼ରୁ ଉତ୍ପନ୍ନ ହୋଇ ଦକ୍ଷିଣ ଓ ପଶ୍ଚିମ ଦିଗକୁ ପ୍ରବାହିତ ହୋଇ ଚଟ୍ଟଗାଁର ୧୨ ମାଇଲ ତଳେ ବଙ୍ଗୋପସାଗରରେ ପଡ଼ୁଅଛି । ଫେନ ପାର୍ବତ୍ୟ ତ୍ରିପୁରାରୁ

# ଚଟ୍ଟଗାଁ ବିଭାଗ

ମାନଦଣ୍ଡ ୧ଇଞ୍ଚ=୪୮ ମାଇଲ



ବିଭାଗ ସୀମା - - - - - - - - -
ଜିଲ୍ଲା ସୀମା -·-·-·-·-·

ଅବଦଲ୍ଲି ରେଲ ············

ନିର୍ଗତ ହୋଇ ଦକ୍ଷିଣକୁ ପ୍ରବାହିତ ହେବା ଦ୍ୱାରା ପାର୍ବତୀୟ ତ୍ରିପୁରାକୁ ଚଟ୍ଟଗାଁରୁ ବିଭକ୍ତ କରିଅଛି ; ତଦନନ୍ତର ଦକ୍ଷିଣ-ପଶ୍ଚିମ ଦିଗକୁ ଗମନ କରି, ନୂଆଖାଲିକୁ ଚଟ୍ଟଗାଁରୁ ବିଭକ୍ତ କରି, ମେଘନାରେ ପତିତ ହୋଇଅଛି ।

ତ୍ରିପୁରା ଜିଲ୍ଲାର ସଦର ମହକୁମା ଗୁମତି କୂଳସ୍ଥିତ କମିଲ୍ଲାରେ ଅବସ୍ଥାପିତ । ଆସାମ ବଙ୍ଗଳା ରେଲବାଟର ପଶ୍ଚିମ ପ୍ରାନ୍ତ ଓ ମେଘନା ନଦୀର ମୁଖରେ ଥିବା ଚାନ୍ଦପୁର ଏହି ଜିଲ୍ଲାର ଏକମାତ୍ର ଅନ୍ୟତମ ପ୍ରଧାନ ନଗର ।

ଆଗରତଲା ପାର୍ବତୀୟ ବା ସ୍ୱାଧୀନ ତ୍ରିପୁରାର ରାଜଧାନୀ । ସ୍ୱାଧୀନ ତ୍ରିପୁରା କପାତୁଳା ଓ କାଠର ବ୍ୟବସାୟ ନିମନ୍ତେ ପ୍ରସିଦ୍ଧ । ଏହାର ଲୋକସଂଖ୍ୟା ୧୬୭, ୪୪୧ । ଚଟ୍ଟଗାଁ ଜିଲ୍ଲାର ସଦର ମହକୁମା ତନ୍ନାମକ ନଗର କର୍ଣ୍ଣଫୁଲି ନଦୀର ଦକ୍ଷିଣ ତୀରରେ ଅବସ୍ଥିତ । ସେହି ନଦୀକୂଳସ୍ଥିତ ରାଙ୍ଗାମାଟି ଏହି ଜିଲ୍ଲାର ପାର୍ବତୀୟ ଅଂଶର ସଦର ମହକୁମା ଅଟେ । ରାଙ୍ଗାମାଟି ଚଟ୍ଟଗାଁ ନଗରଠାରୁ ୬୦ ମାଇଲ ଉପରକୁ ଅଛି ।

କକବଜାର ଚଟ୍ଟଗାଁ ଜିଲ୍ଲାର ଦକ୍ଷିଣ-ପୂର୍ବବର୍ତ୍ତୀ ଏକ ସବ-ଡିବିଜନର ସଦର ମହକୁମା ଅଟେ । ଏଠାରେ ବ୍ରହ୍ମଦେଶାଗତ ମଘମାନେ ପ୍ରଧାନତଃ ବାସ କରନ୍ତି । ଏହି ମଘମାନେ ଏବଂ ଚକ୍‌ମାନାମକ ଏକ ଅସଭ୍ୟ ଜାତି ପାର୍ବତୀୟ ଅଂଶର ପ୍ରଧାନ ଅଧିବାସୀ ଅଟନ୍ତି ।

ମେଘନାରୁ ଉପରକୁ ପ୍ରବେଶ କରିଥିବା ଏକ ସମୁଦ୍ର ଖାଡ଼ି ଉପରେ ନୂଆଖାଲି ଜିଲ୍ଲାର ସଦର ମହକୁମା ତନ୍ନାମକ ନଗରରେ ଅବସ୍ଥିତ ।

## ବେହାର ।

ବେହାର ପ୍ରଦେଶ ପାଟନା ଓ ଭାଗଲପୁରନାମକ ଦୁଇଗୋଟି ବିଭାଗରେ ବିଭକ୍ତ । ଏହି ପ୍ରଦେଶର ମାତୃଭାଷା ହିନ୍ଦୀ ଅଟେ ।

ପାଟନା ବିଭାଗର ଉତ୍ତରରେ ନେପାଲ ଏବଂ ହିମାଳୟ ପର୍ବତମାଳାର ସୋମେଶ୍ୱର ପର୍ବତଶ୍ରେଣୀ ; ପଶ୍ଚିମରେ ଯୁକ୍ତ ପ୍ରଦେଶର ଗୋରକ୍ଷପୁର, ବାଲିଆ, ଗାଜିପୁର, ବନାରସ ଓ ମିର୍ଜ୍ଜାପୁର ଜିଲ୍ଲାମାନ ଏବଂ ତଭସାଠାରେ

# ପାଟନା ବିଭାଗ

ମାନଦଣ୍ଡ, ୧ ଇଞ୍ଚ = ୪୮ ମାଇଲ




ବିଭାଗ ସୀମା ···············
ଜିଲ୍ଲା ସୀମା ···············
ରେଲ ··· ——
ନାଳ ··· ——

ଗଙ୍ଗାରେ ପତିତ ହୋଇଥିବା କର୍ମନାଶା ନଦୀ ; ଦକ୍ଷିଣରେ ଛୋଟନାଗପୁରର ହଜାରିବାଗ ଓ ପାଲାମ ଜିଲ୍ଲା ; ଏବଂ ପୂର୍ବରେ ଭାଗଲପୁର ଓ ମୁଙ୍ଗେର ।

ପାଟନା ବଙ୍ଗଳାହତାର ବୃହତ୍ତମ ଏବଂ ସର୍ବାଧିକ ଜନାକୀର୍ଣ୍ଣ ବିଭାଗ ଅଟେ । ଏଥିରେ ୭ ଗୋଟି ଜିଲ୍ଲା ଅଛି, ତନ୍ମଧ୍ୟରୁ ତିନିଗୋଟି ଯଥା, ପାଟନା ଗୟା ଓ ସାହାବାଦ ଗଙ୍ଗାର ଦକ୍ଷିଣରେ; ଏବଂ ୪ ଗୋଟି ଯଥା, ଦ୍ୱାରଭଙ୍ଗା, ମୁଜଫରପୁର, ଶାରଣ ଓ ଚମ୍ପାରଣ ଗଙ୍ଗାର ଉତ୍ତରରେ ଅଛି ।

ଏହି ବିଭାଗର ଦକ୍ଷିଣସୀମାକୁ ବ୍ୟାପିରହିଥିବା ଏକ ପର୍ବତଶ୍ରେଣୀ କ୍ରମୋଚ୍ଚ ହୋଇ ଛୋଟନାଗପୁରର ମାଳଭୂମି ନିର୍ମାଣ କରିଅଛି ।

ପାଟନା ଜିଲ୍ଲାର ସଦର ମହକୁମାମାନ ପାଟନା ନଗରରେ ଅବସ୍ଥାପିତ, ଏହା ବଙ୍ଗଳାହତାର ଦ୍ୱିତୀୟ ବୃହନ୍ନଗର । ଏହାର ପ୍ରାଚୀନ ନାମ ପାଟଳୀପୁତ୍ର ଏବଂ ଏହା ପୁରାକାଳୀନ ମଗଧରାଜ୍ୟର ରାଜଧାନୀ ଥିଲା । ଗଙ୍ଗା ସହିତ ଶୋଣ ଓ ଗଣ୍ଡକୀର ସଙ୍ଗମସ୍ଥଳ ନିକଟରେ ଥିବାରୁ ଏହା ଏକ ପ୍ରଧାନ ବାଣିଜ୍ୟସ୍ଥଳୀ । ଏଠାରେ ଗୋଟିଏ ସରକାରୀ ଅଫିମ କୋଠି (କାରଖାନାଘର) ଅଛି ।

ବିହାର ଓ ରାଜଗିର ଏହି ଜିଲ୍ଲାର ଆଉ ଦୁଇଗୋଟି ପ୍ରଧାନ ନଗର । ବିହାର ପାଟନାଠାରୁ ୬୬ ମାଇଲ ଦୂରରେ ଦକ୍ଷିଣ-ପୂର୍ବ ଦିଗରେ, ଏବଂ ରାଜଗିର ବିହାରଠାରୁ ୧୬ ମାଇଲ ଦୂରରେ ଦକ୍ଷିଣ-ପଶ୍ଚିମ ଦିଗରେ ପାଟନା ଓ ଗୟା ମଧ୍ୟସ୍ଥିତ ପର୍ବତମାନଙ୍କ ମଧ୍ୟରେ ଅବସ୍ଥିତ । ରାଜଗିର ଗୌତମ ବୁଦ୍ଧଙ୍କ ଜୀବନ ସହିତ ସଂଶ୍ଳିଷ୍ଟ ପୁରାତନ ରାଜଗୃହ ନଗର ବୋଲି ବିଖ୍ୟାତ ।

ଗଙ୍ଗାର ଏକ କ୍ଷୁଦ୍ର ଉପନଦୀ ଫଲ୍‌ଗୁ ତୀରବର୍ତ୍ତୀ ଗୟା ନଗର ପାଟନା ଜିଲ୍ଲାର ଦକ୍ଷିଣସ୍ଥ ଗୟା ଜିଲ୍ଲାର ସଦରମହକୁମା । ପ୍ରସିଦ୍ଧ "ବିଷ୍ଣୁପଦ" ମନ୍ଦିର ଏହି ନଗରରେ ଅଛି । ନାଲନ୍ଦା ବୌଦ୍ଧ ମଠର ଧ୍ୱଂସାବଶେଷ ଗୟା ନଗରର ନିକଟବର୍ତ୍ତୀ । ଗୌତମ ବୁଦ୍ଧଦେବଙ୍କ ତପସ୍ୟା-ସ୍ଥାନ

ବୁଦ୍ଧଗୟା, ଗୟା ନଗରର ୬ ମାଇଲ ଦକ୍ଷିଣରେ ଅଛି । ବୁଦ୍ଧଗୟାରେ ଯେଉଁ ବୋଧିବୃକ୍ଷ ଥିଲା, ତାହା ତଳେ ଗୌତମ ଉପବିଷ୍ଟ ହୋଇ ଦୀର୍ଘକାଳ ତପସ୍ୟା କରିଥିଲେ ।



ବୁଦ୍ଧଗୟା ମନ୍ଦିର ।

ଶାହାବାଦ ଜିଲ୍ଲା ଗୟାର ପଶ୍ଚିମରେ ଅଛି, ଗଙ୍ଗାଠାରୁ ୧୪ ମାଇଲ ଏବଂ ଶୋଣଠାରୁ ୮ ମାଇଲ ଦକ୍ଷିଣରେ ଏହି ଜିଲ୍ଲାର ସଦରମହକୁମା ଆରା ଅବସ୍ଥିତ । ଆରାଠାରୁ ୬୦ ମାଇଲ ଦକ୍ଷିଣଦିଗବର୍ତ୍ତୀ ସାସିରାମ୍ ଏକ ସବ୍‌ଡିଭିଜନର ସଦର ମହକୁମା ଅଟେ ।

କାଇମୁର ପାହାଡମାନଙ୍କ ମଧ୍ୟରେ ଅବସ୍ଥିତ ରୋହାସଗଡ ଓ ସେର-ଗଡ ଦୁଇଗୋଟି ପୁରାତନ ସୁଦୃଢ ଗିରିଦୁର୍ଗର ଧ୍ୱଂସାବଶେଷ ।

ବକ୍ସାରନଗର ଏକ ସବ୍‌ଡିଭିଜନର ସଦରମହକୁମା ଅଟେ । ଏହା

ଆରାଠାରୁ ୪୭ ମାଇଲ ଦୂରରେ ଗଙ୍ଗାର ଦକ୍ଷିଣ କୂଳରେ ଅବସ୍ଥିତ । ଶାହାବାଦ ଜିଲ୍ଲାରେ କେତେଗୁଡ଼ିଏ ନାଳ ଅଛି । ଏମାନ ସମସ୍ତେ ଶୋନକୂଳସ୍ଥିତ ଦେହରଠାରୁ ବାହାର ଅଛନ୍ତି; ଏମାନଙ୍କ ମଧ୍ୟରୁ କେତେଗୁଡ଼ିଏ ପଶ୍ଚିମ ଦିଗରେ ଆରା ଓ ବକ୍ସାର ପର୍ଯ୍ୟନ୍ତ ଏବଂ ଆଉ କେତେଗୁଡ଼ିଏ ପୂର୍ବ ଦିଗରେ ଦିନାପୁର ଓ ଗଙ୍ଗା ପର୍ଯ୍ୟନ୍ତ ବିସ୍ତୃତ ହୋଇ-ଅଛନ୍ତି । ଏମାନେ କୃଷିକ୍ଷେତ୍ରମାନଙ୍କୁ ଜଳ ଯୋଗାନ୍ତି ଏବଂ ଏଥିରେ ନୌକା ପ୍ରଭୃତି ଯାତାୟାତ କରେ ।

ସାରଣ ବଙ୍ଗଳାହତାର ସର୍ବପ୍ରଧାନ ଜନ୍ମଶାଳୀ ଜିଲ୍ଲା । ଏହାର ସଦର-ମହକୁମା ଛପ୍ରା ଗୋଗ୍ରାକୂଳରେ ଅବସ୍ଥିତ । ଗଙ୍ଗା ଓ ଗଣ୍ଡକୀର ସଙ୍ଗମ ସ୍ଥଳରେ ଅବସ୍ଥିତ ଶୋନପୁରଠାରେ ପ୍ରତିବର୍ଷ ଗୋଟିଏ ବୃହତ୍ ମେଳା ହୁଏ ।



ଶୋନପୁର ମେଳା ।

ଚମ୍ପାରଣ ଜିଲ୍ଲା ସାରଣ ଜିଲ୍ଲା ଦେହରୁ କଟାଯାଇ ନୂତନ ଜିଲ୍ଲା ହୋଇ-ଅଛି । ମୋତିହାରୀ ଓ ବେତିଆ ଏହାର ପ୍ରଧାନ ନଗରଦ୍ୱୟ । ମୁଙ୍ଗେରର ବିପରୀତ ପାର୍ଶ୍ୱରେ ଗଙ୍ଗା ନଦୀରେ ପତିତ ହୋଇ ବୁଢ଼ୀ ଗଣ୍ଡକୀ କୂଳରେ ମୁଜଫରପୁର ଜିଲ୍ଲାର ସଦରମହକୁମା ମୁଜଫରପୁର ନଗର ଅବସ୍ଥିତ । ହାଜିପୁର ମୁଜଫରପୁର ଜିଲ୍ଲାର ଆଉ ଗୋଟିଏ ପ୍ରଧାନ ନଗର । ଏହା ଶୋନପୁରର ବିପରୀତ ପାର୍ଶ୍ୱରେ ଗଙ୍ଗା ଓ ଗଣ୍ଡକୀର ସଙ୍ଗମସ୍ଥାନରେ ଅବସ୍ଥିତ ।

ଦ୍ୱାରଭଙ୍ଗା ଜିଲ୍ଲା ପୂର୍ବେ ମୁଜଫରପୁର ଜିଲ୍ଲାର ଏକ ସବ୍‌ଡିଭିଜନ ଥିଲା । ଏହି ଜିଲ୍ଲାର ସଦରମହକୁମା ତନ୍ନାମକ ନଗର । ବଙ୍ଗଳାର ଜଣେ ପ୍ରଧାନ ଜମିଦାର ଦ୍ୱାରଭଙ୍ଗା ମହାରାଜାଙ୍କର ବାସସ୍ଥାନ ।

## ଭାଗଲପୁର ବିଭାଗ ।

ଭାଗଲପୁର ବିଭାଗର ଉତ୍ତର ସୀମାରେ ନେପାଲରାଜ୍ୟ; ପୂର୍ବରେ ମହାନନ୍ଦା ନଦୀ ଏବଂ ଜଲପାଇଗୁଡ଼ି, ରାଜସାହି ଓ ଦିନାଜପୁର ଜିଲ୍ଲାମାନ; ଦକ୍ଷିଣରେ ମୁର୍ଶିଦାବାଦ, ବୀରଭୂମ, ବର୍ଦ୍ଧମାନ ଓ ମାନଭୂମ ଜିଲ୍ଲାମାନ; ଏବଂ ପଶ୍ଚିମରେ ହଜାରିବାଗ, ଗୟା, ପାଟନା ଓ ଦ୍ୱାରଭଙ୍ଗା ଜିଲ୍ଲାମାନ ।

ରାଜମହଲ, ଖଡ୍ଗପୁର ଓ ସାନ୍ତାଲପରଗଣାର ଗିରିମାଳା ଏହି ବିଭାଗର ପର୍ବତ । ଗଙ୍ଗା ରାଜମହଲଠାରେ ରାଜମହଲ ଗିରିମାଳକୁ ପାର ହୋଇ ବକ୍ରଭାବରେ ଦକ୍ଷିଣପୂର୍ବ ଦିଗକୁ ପ୍ରବାହିତ ହୋଇଅଛି । ମୁଙ୍ଗେର-ସ୍ଥିତ ଖଡ୍ଗପୁର ହ୍ରଦର ନାମାନୁସାରେ ତନ୍ନାମକ ଗିରିମାଳାର ନାମ ହୋଇଅଛି । ଏହି ବିଭାଗର ଜିଲ୍ଲାମାନ ଯଥା, ଭାଗଲପୁର ଓ ପୂର୍ଣ୍ଣିୟା ଉତ୍ତରରେ; ମୁଙ୍ଗେର ପଶ୍ଚିମରେ; ମାଲଦହ ପୂର୍ବରେ; ଏବଂ ସାନ୍ତାଲ-ପରଗଣା ଦକ୍ଷିଣରେ ।

ଗଙ୍ଗାନଦୀ ଭାଗଲପୁର ଓ ମୁଙ୍ଗେର ଉଭୟ ଜିଲ୍ଲାକୁ ଭେଦକରି ବହି ଯାଇଅଛି । ଭାଗଲପୁର ଜିଲ୍ଲାର ସୁପାଲ ଓ ମାଧିପୁର ସବ୍‌ଡିଭିଜନ ଏବଂ ମୁଙ୍ଗେର ଜିଲ୍ଲାର ବେଗୁସରାଇ ସବ୍‌ଡିଭିଜନ ଗଙ୍ଗାର ଉତ୍ତରରେ ଅବସ୍ଥିତ ।

# ଭାଗଲପୁର ବିଭାଗ


ନେପାଳ
ଆରରିଆ
ପୂର୍ଣ୍ଣିଆ
କଟିହାର
ଭାଗଲପୁର
ବାଁକା
ଗୋଡ୍ଡା
ଦେଓଘର
ମଧୁପୁର
ଜାମତାଡ଼ା
ମାଲଦହ
ବିଭାଗ ସୀମା
ଜିଲ୍ଲା ସୀମା

ଭାଗଲପୁର ଜିଲ୍ଲାର ସଦରମହକୁମାମାନ ଗଙ୍ଗାର ଦକ୍ଷିଣତୀରବର୍ତ୍ତୀ ଉକ୍ତ ନାମକ ଗୋଟିଏ ବଡ ନଗରରେ ଅବସ୍ଥାପିତ ।

ମୁଙ୍ଗେର ଓ ଜମାଲପୁର ମୁଙ୍ଗେର ଜିଲ୍ଲାର ଦୁଇଗୋଟି ପ୍ରଧାନ ନଗର । ମୁଙ୍ଗେର ଗଙ୍ଗାର ଦକ୍ଷିଣକୂଳରେ ଅଛି, ପୂର୍ବଭାରତୀୟ ରେଲବାଟ ପ୍ରଧାନ କାରଖାନାଘର ଜମାଲପୁରଠାରେ ଅବସ୍ଥିତ, ଏବଂ ଏହା ମୁଙ୍ଗେର ନଗରଠାରୁ ୫ ମାଇଲ ଦକ୍ଷିଣରେ ଅଛି ।

ପୁର୍ଣ୍ଣିୟା ଜିଲ୍ଲାର ସଦରମହକୁମା ପୁର୍ଣ୍ଣିୟା ନଗରରେ ଅଛି । ଏଠାରେ ପ୍ରଚୁର ପରିମାଣରେ ନୀଳ ପ୍ରସ୍ତୁତ ହୁଏ ।



ନୀଳଚିପିବା କଳ ।

ମାଲଦହ ଜିଲ୍ଲାର ସଦରମହକୁମା ମହାନନ୍ଦାର ପୂର୍ବକୂଳବର୍ତ୍ତୀ ଇଙ୍ଗ-ଲିଶ୍ ବଜାରରେ ଅବସ୍ଥିତ । ପୁରାତନ ମାଲଦହ ନଗର ମହାନନ୍ଦାର ପଶ୍ଚିମ କୂଳରେ ୭ ମାଇଲ ଉପରକୁ ଅଛି । ଇଙ୍ଗଲିଶ୍ ବଜାରର ୮ ମାଇଲ ଦକ୍ଷିଣରେ ଗୌଡ ବା ଲକ୍ଷ୍ମୌତି ନଗରର ଧ୍ୱଂସାବଶେଷ ଦେଖାଯାଏ ।

ଏଠାରେ ବର୍ତ୍ତମାନସୁଦ୍ଧା ପ୍ରଚୁରପରିମାଣରେ ଗୁଡ଼ ମିଳୁଥିବାରୁ, ଏହାର ପ୍ରଥମୋକ୍ତ ନାମ ଗୌଡ ହୋଇଥିବାର କଥିତ ଅଛି ; ସେନ ବଂଶୀୟ ରାଜା



ଗୌଡସ୍ଥିତ ଫେରୋଜଶାହଙ୍କ ମିନାର ।

ଲକ୍ଷ୍ମଣ ସେନ ଏହି ନଗରର ସ୍ଥାପୟିତା ହୋଇଥିବାରୁ ଏହାର ଶେଷୋକ୍ତ ନାମ ତାଙ୍କ ନାମ ଅନୁସାରେ ରଖା ଯାଇଥିବାର ଜନଶ୍ରୁତି ଅଛି ।

ସାନ୍ତାଲପରଗଣା ଏକ ନନ୍-ରେଗୁଲେଶନ ଜିଲ୍ଲା ; ଅର୍ଥାତ୍ ଏହା ସାଧାରଣ ପ୍ରଚଳିତ ଆଇନାନୁସାରେ ଶାସିତ ନ ହୋଇ କେତେଗୁଡ଼ିଏ ବିଶେଷ ନିୟମଦ୍ୱାରା ଶାସିତ ହୁଏ । ଏହି ଜିଲ୍ଲା ଦୁଇ ଭାଗରେ ବିଭକ୍ତ, ଯଥା, ଏକ ପାର୍ବତୀୟ ଅଂଶ, ଅନ୍ୟ ଗଙ୍ଗାକୂଳରେ ପ୍ରସାରିତ ଦୀର୍ଘ, ସଂକୀର୍ଣ୍ଣ, ଉର୍ବରାଯୁକ୍ତ ଗୋଟିଏ ସମତଳ ଭୂମି ।

ସାନ୍ତାଲମାନେ ଛୋଟନାଗପୁର ଅଧିବାସୀ କୋଲଜାତୀୟ ଏକ ଅନାର୍ଯ୍ୟ ଜାତି, ରାଜମହଲର ପାହାଡ଼ିଆମାନେ ଅନ୍ୟ ଏକ ଅନାର୍ଯ୍ୟ ଜାତି ଏବଂ ଏମାନଙ୍କର ନିକଟସମ୍ପର୍କୀୟ ଜାତି ଦାକ୍ଷିଣାତ୍ୟରେ ଦେଖାଯାନ୍ତି । ପାହାଡ଼ିଆମାନେ ରାଜମହଲ ଗିରିମାଳାର ଦୁର୍ଗମ ପ୍ରଦେଶରେ ବାସ କରନ୍ତି ।

ସାନ୍ତାଲପରଗଣାର ସଦର ମହକୁମା ମୋରନାମକ ଭାଗୀରଥୀର ଏକ ଉପନଦୀର କୂଳରେ *ନୟାଦୁମ୍କାଠାରେ ସ୍ଥାପିତ ।*

ସାହେବଗଞ୍ଜ ଓ ରାଜମହଲ ଗଙ୍ଗାକୂଳସ୍ଥିତ ଦୁଇଗୋଟି ପ୍ରଧାନ ବାଣିଜ୍ୟ ସ୍ଥଳୀ ।

ଏହି ଜିଲ୍ଲାର ଉତ୍ତର-ପୂର୍ବାଂଶରେ ଅବସ୍ଥିତ ଦେଓଘର ନଗର ହିନ୍ଦୁମାନଙ୍କର ଏକ ପବିତ୍ର ତୀର୍ଥସ୍ଥାନ, ସୁତରାଂ ଏଠାକୁ ଅନେକ ଯାତ୍ରୀ ଆଗମନ କରନ୍ତି ।

## ଓଡ଼ିଶା ।

*ବାଲେଶ୍ୱର, କଟକ, ପୁରୀ, ଅନୁଗୁଳ ଓ କନ୍ଧମାଳ ଜିଲ୍ଲାମାନ ଏବଂ* ୧୭ ଗୋଟି କରଦରାଜ୍ୟ ଓଡ଼ିଶା ବିଭାଗର ଅନ୍ତର୍ଗତ ।

ଚିଲିକାହ୍ରଦ ପୁରୀ ଜିଲ୍ଲାର ଅନ୍ତର୍ଗତ । ଏହାର ଦୈର୍ଘ୍ୟ ୪୪ ମାଇଲ ଏବଂ ସବୁଠାରୁ ପ୍ରଶସ୍ତ ସ୍ଥାନରେ ଏହାର ପ୍ରସ୍ଥ ୧୩ ମାଇଲ । ଏକ ସଂକୀର୍ଣ୍ଣ ବାଲୁକା ସ୍ତୂପଦ୍ୱାରା ଏହା ସମୁଦ୍ରରୁ ବିଚ୍ଛିନ୍ନ ହୋଇଅଛି । ହିନ୍ଦୁମାନଙ୍କ ମଧ୍ୟରେ ପ୍ରବାଦ ଅଛି ଯେ ୩୧୮ ଖ୍ରୀଷ୍ଟାବ୍ଦରେ ବରୁଣଦେବ

# ଓ ଡ଼ି ଶା ପ୍ର ଦେ ଶ

ମାନଦଣ୍ଡ ୧ ଇଞ୍ଚ = ୪୮ ମାଇଲ



ବିଭାଗ ସୀମା - - - - - -
ଜିଲାର ସୀମା — — — —
ରେଲ୍‌ୱେ ରେଖା ————

ପୁଣି ମନ୍ଦିରାକ୍ରମଣକାରୀ ଜଳଦସ୍ୟୁଙ୍କୁ ଜଳମଗ୍ନ କରିବା ନିମନ୍ତେ ସ୍ଥଳଭାଗର ଏକ ଅଂଶକୁ ସମୁଦ୍ରଦ୍ୱାରା ପ୍ଲାବିତ କରିଥିଲେ ; ତହିଁ ଚିଲିକାହ୍ରଦ ଜାତ ହୋଇଅଛି ।



ପୁରୀସ୍ଥିତ ବିଖ୍ୟାତ ଜଗନ୍ନାଥ ମନ୍ଦିର ।

୧୮୬୬ ଖ୍ରୀଷ୍ଟାବ୍ଦର ଦୁର୍ଭିକ୍ଷ ହେତୁରୁ ଓଡ଼ିଶାରେ କେତେଗୁଡ଼ିଏ ନାଳ ଖୋଦିତ ହୋଇଅଛି ; ତାହା କୃଷି କ୍ଷେତ୍ରମାନଙ୍କୁ ଜଳ ପ୍ରଦାନ କରେ ଏବଂ ତହିଁରେ ନୌକା ଓ ଷ୍ଟୀମର ପ୍ରଭୃତି ଯାତାୟାତ କରେ ।

ବୁଢ଼ାବଳଙ୍ଗ କୂଳରେ ଅବସ୍ଥିତ ବାଲେଶ୍ୱର ନଗରରେ ବାଲେଶ୍ୱର ଜିଲ୍ଲାର ସଦରମହକୁମାମାନ ଅଛି ।

ଧାମରାମୁହାଣରୁ ୨୦ ମାଇଲ ଦୂରରେ ବୈତରଣୀ ନଦୀର ଉତ୍ତର କୂଳରେ ଥିବା ଚାନ୍ଦବାଲି ଏକ ପ୍ରଧାନ ବାଣିଜ୍ୟସ୍ଥଳୀ ।

ମହାନଦୀ କୂଳବର୍ତ୍ତୀ କଟକ ନଗରରେ କଟକ ଜିଲ୍ଲାର ସଦରମହକୁମା ଅବସ୍ଥିତ । ସୁନା ଓ ରୂପାର ସୁନ୍ଦର ତାରକସି କାମ ନିମନ୍ତେ କଟକ ନଗର ବିଖ୍ୟାତ ।

ପୁରୀ ଜିଲ୍ଲା ମନ୍ଦିରମାନଙ୍କ ନିମନ୍ତେ ବିଖ୍ୟାତ । ପ୍ରାୟ ୬୫୦ ଖ୍ରୀଷ୍ଟାବ୍ଦରେ ନିର୍ମିତ ଭୁବନେଶ୍ୱରର ଧ୍ୱଂସପ୍ରାପ୍ତ ଶୈବମନ୍ଦିରମାନ, ୧୧୭୪ ଖ୍ରୀଷ୍ଟାବ୍ଦରେ



ଭୁବନେଶ୍ୱର ।

ନିର୍ମିତ ପୁରୀସ୍ଥିତ ଜଗନ୍ନାଥ ମନ୍ଦିର, ତ୍ରୟୋଦଶ ଶତାବ୍ଦୀରେ ନିର୍ମିତ କୋଣାର୍କର କୃଷ୍ଣବର୍ଣ୍ଣ ସୂର୍ଯ୍ୟମନ୍ଦିର ଏହି ଜିଲ୍ଲାର ପ୍ରଧାନ ମନ୍ଦିରମାନ । କୋଣାର୍କର ସୂର୍ଯ୍ୟମନ୍ଦିର ଓଡ଼ିଶାର ଗଙ୍ଗାବଂଶୀୟ ରାଜାମାନଙ୍କର କୀର୍ତ୍ତି ଏବଂ ଏହା ସମୁଦ୍ର ଯାତ୍ରୀମାନଙ୍କୁ ବହୁଦୂରରୁ ସ୍ଥଳପଥର ସଙ୍କେତ ପ୍ରଦାନ କରଇ । ପୁରୀ ଓ କଟକର ମଧ୍ୟବର୍ତ୍ତୀ ଉଦୟଗିରି ଓ ଖଣ୍ଡଗିରିର

ଗୁହାମାନଙ୍କରେ, କଟକର ୨୦ ମାଇଲ ଦକ୍ଷିଣସ୍ଥିତ ଧଉଳୀ ପର୍ବତରେ ଏବଂ ଚିଲିକା ହ୍ରଦତୀରସ୍ଥ ଗଞ୍ଜାମର ଯୌଗଡ଼ଠାରେ ଅଶୋକଙ୍କର ଆଜ୍ଞା ଏବଂ ଅନେକ ବୌଦ୍ଧ ମୂର୍ତ୍ତି ଖୋଦିତ ରହିଅଛି । ୧୮୫୫ ଖ୍ରୀଷ୍ଟାବ୍ଦରେ କନ୍ଧମାଳ ବ୍ରିଟିଶରାଜ୍ୟଭୁକ୍ତ ହୋଇଥିଲା, କାରଣ ତାହାର ସ୍ଥାନୀୟ ଶାସନକର୍ତ୍ତା ବୌଦର ରାଜା କନ୍ଧମାନଙ୍କୁ ଭଲରୂପେ ଶାସନ କରି ପାରୁ ନ ଥିଲେ । କନ୍ଧମାନେ ପୂର୍ବକାଳରେ ସେମାନଙ୍କ ଶସ୍ୟକ୍ଷେତ୍ରର ଉର୍ବରତା ବୃଦ୍ଧି ନିମନ୍ତେ ନରବଳି ପ୍ରଦାନ କରୁଥିଲେ । ୧୮୯୧ ଖ୍ରୀଷ୍ଟାବ୍ଦରେ କନ୍ଧମାଳ ଅନୁଗୁଳ ସହିତ ଏକ ସ୍ୱତନ୍ତ୍ର ଜିଲ୍ଲାଭୁକ୍ତ ହେଲା ।

ଓଡ଼ିଶାର ୧୭ ଗୋଟି କରଦରାଜ୍ୟ ମଧ୍ୟରେ ଉତ୍ତର ଦିଗରେ ସ୍ଥିତ ମୟୂରଭଞ୍ଜ, ଉତ୍ତର-ପଶ୍ଚିମସ୍ଥ କେନ୍ଦୁଝର ଓ ଢେଙ୍କାନାଳ ସର୍ବପ୍ରଧାନ । ମୟୂରଭଞ୍ଜ ଏମାନଙ୍କ ମଧ୍ୟରେ ବୃହତ୍ତମ ଓ ସର୍ବାପେକ୍ଷା ଅଧିକ ଜନଶାଳୀ । ଏହି ରାଜ୍ୟମାନଙ୍କର ଲୋକସଂଖ୍ୟା ୧, ୯୪୭, ୧୨୨ ।

## ଛୋଟନାଗପୁର ।

ଛୋଟନାଗପୁର ବିଭାଗରେ ୫ ଗୋଟି ଜିଲ୍ଲା ଏବଂ ୯ ଗୋଟି କରଦ ରାଜ୍ୟ ଅଛି  ଛୋଟନାଗପୁର ଏକ ମାଳଭୂମି ଏବଂ ଏହା ମଧ୍ୟ ଭାରତୀୟ ପର୍ବତମୟ ପ୍ରଦେଶମାନଙ୍କର ଉତ୍ତର ଦିଗକୁ ବିସ୍ତୃତ । ଏଥିରେ ପ୍ରଧାନତଃ ଅନାର୍ଯ୍ୟ ଜାତିମାନେ ବାସ କରନ୍ତି । ଏମାନଙ୍କ ମଧ୍ୟରେ କୋଲମାନେ ସର୍ବପ୍ରଧାନ

ଏହି ବିଭାଗର ଉତ୍ତରରେ ମଧ୍ୟ-ଭାରତୀୟ ଏଜେନ୍ସି, ଯୁକ୍ତପ୍ରଦେଶ ଏବଂ ବିହାର (ଗୟା ଓ ପାଟନା ଜିଲ୍ଲା;) ପୂର୍ବରେ ବଙ୍ଗଳାର ବର୍ଦ୍ଧମାନ ଓ ବାଙ୍କୁଡ଼ା ଜିଲ୍ଲା; ଦକ୍ଷିଣରେ ଓଡ଼ିଶାର କରଦ ରାଜ୍ୟ; ଏବଂ ପଶ୍ଚିମରେ ମଧ୍ୟଭାରତୀୟ ଏଜେନ୍ସି ଓ ମଧ୍ୟପ୍ରଦେଶ ।

ଛୋଟନାଗପୁରରେ ଦୁଇଗୋଟି ପ୍ରଧାନ ମାଳଭୂମି ଅଛି ଯଥା,


ଛୋଟ ନାଗପୁର ପ୍ରଦେଶ
ମାନଦଣ୍ଡ, ୧ ଇଞ୍ଚ = ୪୮ ମାଇଲ
ହଜାରିବାଗ
ଲୋହାରଡଗା
ପୁରୁଲିଆ
ମାନଭୂମ
ବିଭାଗ ସୀମା
ଜିଲ୍ଲା ସୀମା
ରେଲୱେ

ଉତ୍ତରରେ ହଜାରିବାଗ ମାଳଭୂମି ; ଏବଂ ଦକ୍ଷିଣରେ ଲୋହାରଡଗା (ରାଞ୍ଚି) ମାଳଭୂମି ; ଉଭୟ ମାଳଭୂମି ମଧ୍ୟରେ ଦାମୋଦର ନଦୀର ଉପତ୍ୟକା ଅଛି । ହଜାରିବାଗ ମାଳଭୂମିରୁ ଏକ ନିମ୍ନତର ମାଳଭୂମି ଉତ୍ତରକୁ ଗୟା ପର୍ଯ୍ୟନ୍ତ ବିସ୍ତୃତ ହୋଇଅଛି ।

ହଜାରିବାଗର ଦକ୍ଷିଣ-ପୂର୍ବରେ ଅପେକ୍ଷାକୃତ ନିମ୍ନ ସମଭୂମି ଉପରେ ଅବସ୍ଥିତ ମାନଭୂମ ଜିଲ୍ଲା, ସାନ୍ତାଳ ପରଗଣା ଓ ଦକ୍ଷିଣ-ପଶ୍ଚିମ ଭାଗଲ-ପୁରସ୍ଥିତ ଗିରିମାଳାର ବିସ୍ତୃତ ମାତ୍ର ।

ପାଲମୌ ଜିଲ୍ଲା ହଜାରିବାଗର ପଶ୍ଚିମ ଦିଗରେ । ଏହା ଦାମୋଦର ଉପତ୍ୟକାର ଉପରେ ଥିବା ମାଳଭୂମିଠାରୁ ବିସ୍ତୃତ ହୋଇଅଛି । ଏହାକୁ ଶୋନ ନଦୀରେ ପତିତ ଉତ୍ତର କୋଇଲ ନଦୀର ଉପତ୍ୟକା ବୋଲି ବର୍ଣ୍ଣନା କରି ଯାଇପାରେ ।

ସୁବର୍ଣ୍ଣରେଖା ନଦୀ ରାଞ୍ଚି ମାଳଭୂମିରୁ ଜାତ ହୋଇ ଏହି ମାଳଭୂମିର ପୂର୍ବାଂଶରେ ପତିତ ଜଳରାଶି ଗ୍ରହଣ କରୁଅଛି ; ତଦନନ୍ତର ଏହା ସିଂହ-ଭୂମ ଓ ମେଦନୀପୁର ମଧ୍ୟରେ ଦକ୍ଷିଣ ଦିଗକୁ ପ୍ରବାହିତ ହୋଇ ବାଲେଶ୍ୱର ଜିଲ୍ଲାରେ ସମୁଦ୍ରରେ ପଡ଼ିଅଛି । ଗାଙ୍ଗପୁର ରାଜ୍ୟର ପୂର୍ବାଂଶରେ ଦକ୍ଷିଣ କୋଇଲ ଓ ଶଙ୍ଖନଦୀ ମିଳିତ ହୋଇ ବ୍ରାହ୍ମଣୀ ନାମ ଧାରଣ କରିଅଛନ୍ତି । ବ୍ରାହ୍ମଣୀ ଓଡ଼ିଶାରେ ସମୁଦ୍ର ସଙ୍ଗେ ମିଳିତ ହୋଇଅଛି ।

ଛୋଟନାଗପୁରର ପଶ୍ଚିମାଂଶ ପର୍ବତମୟ ଏବଂ ଏଥିରେ ୯ ଗୋଟି କରଦ ରାଜ୍ୟ ଅବସ୍ଥିତ । ଏହି ରାଜ୍ୟମାନଙ୍କର ଲୋକସଂଖ୍ୟା ୯୮୭୪୮୨ ଏବଂ ସେମାନଙ୍କ ମଧ୍ୟରେ ସାରଗୁଜା, ଗାଙ୍ଗପୁର ଓ ଯଶପୁର ସର୍ବପ୍ରଧାନ ।

ଲୋହାରଡଗା ଓ ହଜାରିବାଗ ଉଭୟର ମଧ୍ୟବର୍ତ୍ତୀ ଉପତ୍ୟକା ମଧ୍ୟରେ ପ୍ରବାହିତ ଦାମୋଦର ନଦୀ ହଜାରିବାଗ ମାଳଭୂମିରେ ପତିତ ଜଳକୁ ବହନକରେ ଏବଂ କରାରନାମକ ତାହାର ଏକ ଉପନଦୀ ପୂର୍ବୋକ୍ତ ନିମ୍ନତର ମାଳଭୂମିର ଜଳକୁ ବହନ କରଇ ।

ହଜାରିବାଗର ଦକ୍ଷିଣ-ପୂର୍ବରେ ମାନଭୂମ ଜିଲ୍ଲା । ଏହାର ସଦର-ମହକୁମା ପୁରୁଲିଆରେ ଅବସ୍ଥିତ । ମାନଭୂମର ଦକ୍ଷିଣ-ପଶ୍ଚିମରେ ସିଂହଭୂମ ଜିଲ୍ଲା ଏବଂ ତାହାର ସଦରମହକୁମା ଚାଇବାସାରେ ଅବସ୍ଥିତ ।

ସମାପ୍ତ ।

PRINTED AT THE ORISSA MISSION PRESS, CUTTACK.

# Macmillan's New Series of Text-Books for Schools in India. Approved by the Director of Public Instruction, Bengal.



| | | | |
|---|---|---|---|
| Oriya Alphabet and Spelling Book. For Infant Class and Standard I | ... | As. | 1 |
| Oriya Lower Primary Science Reader | ... | „ | 3 |
| Oriya Lower Primary Arithmetic | ... | „ | 3 |
| Oriya Upper Primary Science Reader | ... | „ | 4 |
| Oriya Upper Primary History Reader Bengal | | „ | 3 |
| Oriya Upper Primary Geography Reader | ... | „ | 3 |
| Oriya Upper Primary and Middle Vernacular Arithmetic | ... | „ | 8 |
| Oriya Upper Primary Literature Book | ... | „ | 3 |
| Oriya Upper Primary and Middle Vernacular Practical Geometry and Mensuration | | „ | 4 |
| Oriya Middle Vernacular Science Reader | ... | „ | 7 |
| Oriya Middle Vernacular History Reader | ... | „ | 4 |
| *Oriya Middle Vernacular Literature Book* | | „ | *6* |
| Oriya Middle Vernacular Geography Reader | ... | „ | 4 |

*For any of these books apply to*

R. J. GRUNDY, Supt.

**Orissa Mission Press, Mission Road, Cuttack.**